କନ୍ଦର୍ପଲାଲ ଦାସ



# ଜୀବନ ସାହିତ୍ୟ ଓ
# ସାଧୁ ଡୋମୀତି ପୁଁ

This book has been printed in paper made available by the Government of India at concessional rate.

# ଜୀବନ ଯନ୍ତ୍ରଣା ଓ ଯାହା ଯେମିତି ହୁଏ

ପ୍ରକାଶକ

କହ୍ନେଇଲାଲ ସ୍ମୃତିରକ୍ଷା କମିଟି

ଭୁବନେଶ୍ୱର

ମୂଲ୍ୟ ଃ ୫-୦୦ (ପାଞ୍ଚଟଙ୍କା ମାତ୍ର)

# ସୂଚୀ



୦ —

# କନ୍‌ହେଇର କଥା ତା'ର ପାଇଁ

ଗଳ୍ପର ଚରିତ୍ରମାନେ ସବୁ ଧୀରେ ଧୀରେ ମିଳେଇ ଯା'ନ୍ତି ଓ ତା' ସାଙ୍ଗରେ ଲେଖକ ମଧ୍ୟ କ୍ରମେ ଏମିତି ହଜିଯାଏ । ପାଠକମାନଙ୍କ ମନରେ କେବଳ ଗୋଟିଏ ଇମ୍ପ୍ରେସନ ରହିଯାଏ । ପୃଥିବୀରେ ତା'ପରେ ଅନେକ ମୁହୂର୍ତ୍ତ, ଅନେକ ଘଟଣା, ଅନେକ ଚରିତ୍ର ଓ ଅନେକ ଲେଖକ । କେଉଁ ଏକ ନିର୍ଜନ ସଞ୍ଜରେ ବା ଉଦାସ ଦ୍ୱିପ୍ରହରରେ ସ୍ମୃତିର ପାରେଶ୍ମି ଉପର ଦେଇ ପୁଣି କେତେ ମୁହୂର୍ତ୍ତରେ ରହି ରହି ତା'ର ସତ୍ତା ଉଙ୍କି ମାରେ । କିନ୍ତୁ ଏଇ ଦଶକର ଶକ୍ତିମାନ କଥା ଶିଳ୍ପୀ କନ୍‌ହେଇଲାଲ ଦାସ ଏହାର ଯେମିତି ଏକ ବ୍ୟତିକ୍ରମ । ଟିକିଏ ଚେଷ୍ଟା କଲେ ତାଙ୍କ ଗଳ୍ପର ଚରିତ୍ରମାନଙ୍କ ମାଧ୍ୟମରେ ତାଙ୍କୁ ପାରେଶ୍ମି ଉପରୁ ସବୁବେଳେ ସ୍ପଷ୍ଟ ଦେଖି ହେବ ।

ତାଙ୍କର ସ୍ଥାନ ସମସ୍ତ ପାରେଶ୍ମି ଊର୍ଦ୍ଧ୍ୱରେ । ସେ ଯେମିତି ସବୁ ପାରେଶ୍ମିମାନଙ୍କ ଠାରୁ ଉଚ୍ଚ ।

ସେ ଏକ ଇମିତି ଇମ୍ପ୍ରେସନ୍ ଯାହାକୁ ସହଜରେ ଲିଭେଇ ହୁଏ ନାହିଁ ।

'ବଳଙ୍ଗ ଦାମୋଦର ନଦୀର କେତୋଟି ମୁହୂର୍ତ୍ତ' ଓ 'ଖେଳାଳି' ଭଳି ପ୍ରେମମୂଳକ ଗଳ୍ପଠାରୁ ଆରମ୍ଭ ହୋଇ 'ଏକ ବ୍ୟବଚ୍ଛେଦର ଧାରା ବିବରଣୀ' ଓ 'ବିଶେଷ ସମ୍ବାଦ'···ଇତ୍ୟାଦି ବାସ୍ତବବାଦୀ ଗଳ୍ପମାନଙ୍କ ପର୍ଯ୍ୟନ୍ତ ଏକ କଣ୍ଟକବହୁଳ ରାସ୍ତା ଅତିକ୍ରମ କରିସାରି ସେ ଯେତେବେଳେ·····'ଏକ ମୁକ୍ତ ରଙ୍ଗୀନ ଆକାଶର ସ୍ୱପ୍ନ' ଦେଖୁଥିଲେ, ଠିକ୍ ସେଇ ସମୟରେ ହିଁ ତାଙ୍କୁ ଆମ୍ଭମାନଙ୍କଠାରୁ ବିଦାୟ ନେବାକୁ ପଡ଼ିଲା । ଈଶ୍ୱରଙ୍କୁ ସେ ମଣିଷ ହୋଇ ବଞ୍ଚି, ମଣିଷର ସବୁ ଦୁଃଖ, ଯନ୍ତ୍ରଣା ସହିବାକୁ ଯେଉଁ ଚ୍ୟାଲେଞ୍ଜ ଦେଇଥିଲେ, ଈଶ୍ୱର ବୋଧେ ସେଥିରେ ହାରିଯାଇ ତାଙ୍କୁ ନିଜର କରିନେଲେ ।

ଓଡ଼ିଆ ସାହିତ୍ୟ ପାଇଁ ତାଙ୍କ ମନରେ ଥିଲା ଅଫୁରନ୍ତ ଭଲପାଇବା । ନିଜ ପାଖାପାଖି ବାତାବରଣକୁ ସାହିତ୍ୟମୟ କରି ତୋଳିବା ଥିଲା ତାଙ୍କ ଚରିତ୍ରର ଏକ ବିଶେଷ ଅଙ୍ଗ । ସାହିତ୍ୟରେ ରୁଚି ନ ରଖିଥିବା ଅନେକ ବ୍ୟକ୍ତି ମଧ୍ୟ ତାଙ୍କ ସଂସ୍ପର୍ଶରେ ଆସି ଗଳ୍ପ କବିତା ବୁଝିବା ଓ ଲେଖିବା ଆରମ୍ଭ କରିଦେଇଥିଲେ, କିନ୍ତୁ ଏଥିରେ

ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କନ୍‌ହେଇଁ ଲାଲଙ୍କ ସାହିତ୍ୟ ପ୍ରେମର ଏ ଏକ ସାମାନ୍ୟ ନିଦର୍ଶନ ମାତ୍ର । ଓଡ଼ିଆ ସାହିତ୍ୟ ପାଇଁ ସେ ଛାଡ଼ି ଯାଇଛନ୍ତି ତାଙ୍କର ପ୍ରାୟ ୧୦୦ଟି ଗଳ୍ପ ଓ ଗୋଟିଏ କ୍ଷୁଦ୍ର ଉପନ୍ୟାସ ('ଦୁର୍ଘଟଣା'—୧୯୭୫ ପୂଜାସଂଖ୍ୟା ଅସନ୍ତାକାଲ୍'ରେ ପ୍ରକାଶିତ) * ।

ତାଙ୍କ ନିଜ ଭାଷାରେ '......ଅତୀତର ସ୍ମୃତି ଓ ଭବିଷ୍ୟତର ସ୍ୱପ୍ନକୁ ଶବ୍ଦରେ ଶୁଣିବା ହିଁ ମୋ ଜୀବନର ଅନ୍ୟ ନାମ...' । ତାଙ୍କର ପ୍ରାୟ ସବୁ ଗଳ୍ପରେ ଏଇ ଭାବ ସ୍ପଷ୍ଟ ପରିଲକ୍ଷିତ । ସୂକ୍ଷ୍ମ ମାନବିକତା ସମ୍ପର୍କର ବ୍ୟବଚ୍ଛେଦ କରିବାରେ ସେ ଥିଲେ ଏକ ନିପୁଣ ଡାକ୍ତର ।

ଆଜି ସେ ନାହାନ୍ତି, ତାଙ୍କ ଗଳ୍ପର ଚରିତ୍ରମାନେ ବି କ୍ରମେ ଅସ୍ପଷ୍ଟ ହୋଇ ଆସିଲେଣି, ପଢ଼ିବାର ଢଙ୍ଗ ବି ବଦଳି ଗଲାଣି କିନ୍ତୁ 'ପ୍ରେମର ରଙ୍ଗ ସବୁଦିନେ ସେଇ ଏକା ପ୍ରକାର' । ପ୍ରେମର ରଙ୍ଗ ଯେମିତି କନ୍‌ହେଇଲାଲଙ୍କର ରଙ୍ଗ । ତାଙ୍କର ପ୍ରେମ ଗାଳ୍ପିକ ସଫଳତାର ବୋଧେ ଏହାହିଁ ରହସ୍ୟ । ପୃଥିବୀଟା ସାରା ସେ କେବଳ ପ୍ରେମ, ସ୍ନେହ, ମମତା ଖୋଜି ବୁଲୁଥିଲେ । ଅନେକ ସ୍ଥଳରେ ଲୋକେ ଭୁଲ୍ ବୁଝିଛନ୍ତି, ଈର୍ଷା ମଧ୍ୟ କରିଛନ୍ତି କିନ୍ତୁ ଶେଷରେ ତାଙ୍କର ବିଶାଳ ହୃଦୟ ଆଗରେ ସମସ୍ତେ ନଇଁବାକୁ ବାଧ୍ୟ ହୋଇଛନ୍ତି ।

ସମସ୍ତଙ୍କପାଇଁ ତାଙ୍କ ମୁହଁରେ ଗୋଟିଏ ସଂଳାପ— "......ତୁମେ ସୁଖରେ ରୁହ, ଶାନ୍ତିରେ ରୁହ । ଆଲୋକ ଭଳି ଉଜ୍ଜ୍ୱଳ, ଫୁଲ ଭଳି ସତେଜ ରୁହ......" ।

**ମିହିର ପଟ୍ଟନାୟକ**

* ଗଳ୍ପରେ ଗତାନୁଗତିକତା ଭାଙ୍ଗିବା ଶବ୍ଦକୁ ନେଇ ଖେଳିବା ତାଙ୍କର ଥିଲା ଏକ ଅଭ୍ୟାସ ଓ ଗଳ୍ପ ମାଧ୍ୟମରେ ବିଭିନ୍ନପ୍ରକାର ପରୀକ୍ଷା ଚଳେଇବାରେ ସେ ଥିଲେ ସିଦ୍ଧହସ୍ତ । 'ପାରେଣ୍ଟ' (ନବତରଙ୍ଗରେ ପ୍ରକାଶିତ) ତାଙ୍କର ଏହିଭଳି ଏକ ଗଳ୍ପ ।

"ମଇଁଷି ପିଠିରେ କିଏ ଚଢ଼ି ଆସି ମୋ ଦୁଆରେ ଧକ୍କା ମାରେ।
ତଥାପି ମୋର ବା ଭୟ କାହାକୁ ? ମୁଁ ଖାଷନାଶ୍ବରେ ସୁରକ୍ଷିତ କାରଣ ମୋ
ବାଆଁରେ ଭ୍ରମ ମାଳ ଆଣିଲା ଅଭିଶାପ ଓ ଡାହାଣରେ ଗୋଲ ଆଖିର
ଆଶୀର୍ବାଦ।"

(କନ୍ହେଇଲାଲ୍)

| | |
|---|---|
| ପ୍ରବେଶ | ପ୍ରସ୍ଥାନ |
| ତା ୨।୭।୧୯୪୭ | ତା ୨୭।୭।୧୯୭୫ |

ପିତା
**କ୍ଷେତ୍ରମୋହନ ଦାସ**

ମାତା
**ଅନୀଲା ଦେବୀ**

ଗ୍ରାମ : କମର୍ଦ୍ଧା । ଜିଲ୍ଲା : ବାଲେଶ୍ୱର

ଗାଳ୍ପିକ କନ୍ହେଇଲାଲ ଦାସଙ୍କର ପ୍ରଥମ ଶ୍ରାଦ୍ଧବାସର ପାଳନ ଓ ତାଙ୍କ ସ୍ମୃତି ରକ୍ଷା ଇତ୍ୟାଦିର ପ୍ରସ୍ତୁତି ଉଦ୍ଦେଶ୍ୟରେ ସଂଗ୍ରାମୀର ବହୁଳ ସାହିତ୍ୟିକ ଅନୁଷ୍ଠାନର କର୍ମକର୍ତ୍ତାମାନଙ୍କର ଏକ ମିଳିତ ବୈଠକ ତା ୨।୮।୭୮ ସନ୍ଧ୍ୟା ୬।୩୦ ମିନିଟରେ ଭୁବନେଶ୍ୱର ସଂଗ୍ରାମୀ ପାଠାଗାରରେ ହୋଇଥିଲା । ବହୁଳ ପତ୍ର ପତ୍ରିକାରେ ତାଙ୍କର ପ୍ରକାଶିତ ଓ ଅପ୍ରକାଶିତ ଲେଖାଗୁଡ଼ିକ ପୁସ୍ତକ ଆକାରରେ ପ୍ରକାଶ କରିବା କନ୍ହେଇଲାଲ ସ୍ମୃତିରକ୍ଷା କମିଟିର ମୁଖ୍ୟ ଉଦ୍ୟମରୂପେ ଗ୍ରହଣ କରାଯାଇଥିଲା । ଏହାର କାର୍ଯ୍ୟ ସମ୍ପୂର୍ଣ୍ଣ କରିବା ନିମନ୍ତେ ଆବାହକରୂପେ ଶ୍ରୀ ପୀତବାସ ରାଉତରାୟ ଓ ହ ପ୍ରସନ୍ନ ଦାସ ଏବଂ କୋଷାଧ୍ୟକ୍ଷ ରୂପେ ଶ୍ରୀମତୀ ଶୈଳବାଳା ମହାନ୍ତିଙ୍କୁ ଦାୟିତ୍ୱ ଦିଆଯାଇଥିଲା । ଅନେକ ଅସୁବିଧା ସତ୍ତ୍ୱେ ମଧ୍ୟ ଆମ୍ଭମାନଙ୍କର ସେ ଉଦ୍ୟମ ସଫଳ ହୋଇଛି । ଅନେକ ଶୁଭେଚ୍ଛୁ ଭାଇ, ଭଉଣୀମାନେ ଏହି ଉଦ୍ୟମରେ ଆର୍ଥିକ ସାହାଯ୍ୟ ତଥା ଶ୍ରମଦାନ କରିଛନ୍ତି, ସେମାନଙ୍କୁ ଓ କନ୍ହେଇଲାଲଙ୍କର ମାତା ଶ୍ରୀମତୀ ଅନଲା ଦାସ ବହିଟିକୁ ପ୍ରକାଶ କରିବା ନିମନ୍ତେ ଅନୁମତି ପ୍ରଦାନ କରିଥିବାରୁ ତାଙ୍କୁ କନ୍ହେଇଲାଲ ସ୍ମୃତିରକ୍ଷା କମିଟି ପକ୍ଷରୁ ମୁଁ ଧନ୍ୟବାଦ ଅର୍ପଣ କରୁଛି ।

ନେତାଲୋକଙ୍କଠାରେ ଦୁଇଥର ସମ୍ବାଦ ଦେଇଥିଲି ଏବଂ ପତ୍ର ଦେଇଥିଲେ ମଧ୍ୟ ଦୁଃଖର କଥା ଅନେକ ବନ୍ଧୁମାନଙ୍କଠାରୁ ଆଶାନୁରୂପ ସହଯୋଗ ମିଳିଲା ନାହିଁ । ସେଥିପାଇଁ ଆର୍ଥିକ ଅସୁବିଧା ଦୃଷ୍ଟିରୁ କନ୍ହେଇଲାଲ ଦାସଙ୍କର ସମସ୍ତ ରଚନାଗୁଡ଼ିକ ଏଥିରେ ସନ୍ନିବେଶିତ କରାଯାଇ ପାରିଲା ନାହିଁ ।

ଏହି ସମସ୍ତ ବହିକୁ କନ୍ହେଇଲାଲଙ୍କର ମାତା ଶ୍ରୀମତୀ ଅନଲା ଦାସଙ୍କୁ ଅର୍ପଣ କରାଗଲା ।

**ଶୈଳବାଳା ମହାନ୍ତି**
ସଭାପତି
କନ୍ହେଇଲାଲ ସ୍ମୃତି କମିଟି
ଭୁବନେଶ୍ୱର

'ଜୀବନ ଯନ୍ତ୍ରଣା ଯାହା ଯେମିତି ହୁଏ' ଯେଉଁ ଭାଇ ଭଉଣୀମାନଙ୍କର ଶୁଭ ଉଦ୍ୟମ ଓ ସାହାଯ୍ୟ ନେଇ ରୂପ ପାଇଛି—

ଯଦୁନାଥ ଦାଶ ମହାପାତ୍ର, ଅଖିଳ ମୋହନ ପଟ୍ଟନାୟକ, ଶାନ୍ତନୁ ଆଚାର୍ଯ୍ୟ, ବିଭୂତି ପଟ୍ଟନାୟକ, ଅଜିତ୍ କୁମାର ଦାଶ ମହାପାତ୍ର, ରବି ମିଶ୍ର, ଲଳିତ ସାହୁ ଓ ଅନ୍ୟମାନେ —

| | |
|---|---|
| ଶ୍ରୀ ବ୍ରଜନାଥ ରଥ | ଟ ୧୦୦ |
| ଅଧ୍ୟାପିକା ବୀଣା ମହାନ୍ତି | ଟ ୧୦୦ |
| ଉଜ୍ଜ୍ୱଳ ପାଢ଼ୀ | ଟ ୧୦୦ |
| ଲଳିତ ପଟ୍ଟନାୟକ | ଟ ୧୦୦ |

| | | |
|---|---|---|
| ସିଦ୍ଧେଶ୍ୱର ପଟ୍ଟନାୟକ | ଟ | ୧୫୫ |
| ଗିରୀଶ ମିଶ୍ର | ଟ | ୧୫୦ |
| ପୀତବାସ ରାଉତରାୟ | ଟ | ୨୦୦ |
| ,, ସଂଗ୍ରହ କରି | ଟ | ୧୫୦ |
| ସୀତାକାନ୍ତ ମହାପାତ୍ର | ଟ | ୫୦ |
| ଭାବଗ୍ରାହୀ ମିଶ୍ର | ଟ | ୧୫ |
| ଶ୍ରେୟାନ ସଂସଦ | ଟ | ୫୦ |
| ହରପ୍ରସନ୍ନ ଦାସ (ସଂଗ୍ରହକରି) | ଟ | ୫୦ |
| ଶୈଳବାଳା ମହାନ୍ତି | ଟ | ୩୦୦ |

ଶୈଳବାଳା ମହାନ୍ତିଙ୍କ ପାଖକୁ ଡାକରେ ଆସିଛି

| | | |
|---|---|---|
| ଜ୍ଞାନରଞ୍ଜନ ସ୍ୱାଇଁ | ଟ | ୧୦ |
| ଶାନ୍ତିଲତା ସାହୁ | ଟ | ୧୦ |
| ଶିଶିର ରଞ୍ଜନ ଦାସ | ଟ | ୧୦ |
| ଶ୍ରୀ ପ୍ରସନ୍ନ ମିଶ୍ର (ମୈସୁ ) | ଟ | ୧୦ |
| ବଳରାମ ଷଡ଼ଙ୍ଗୀ | ଟ | ୧୦ |
| ଏନ୍. ସାହୁ | ଟ | ୧୦ |
| ଅମୀୟ କୁମାର ଦାସ | ଟ | ୧୦ |
| ପ୍ରସନ୍ନ କୁମାର ଦାସ | ଟ | ୧୦ |
| ବିଷ୍ଣୁ ଚରଣ ସାହୁ | ଟ | ୧୦ |
| ପ୍ରବାସୀ ଡନ୍‌ଲପ୍ ଉତ୍କଳ ସମାଜ | ଟ | ୧୦ |
| ପ୍ରତିଭା ପରିଡ଼ା | ଟ | ୧୦ |
| ନିରଞ୍ଜନ ଜେନା | ଟ | ୧୦ |
| ଏସ୍. କେ. ଦାସ | ଟ | ୧୦ |
| ଏସ୍. ପରିଡ଼ା | ଟ | ୧୦ |
| ରାମଚନ୍ଦ୍ର ସାହୁ | ଟ | ୧୦ |
| ହେଡ଼ମାଷ୍ଟ୍ର ସାଲଢଙ୍କା ଏମ୍ ଇ ସ୍କୁଲ | ଟ | ୧୦ |
| ଗୁଣନିଧି ମହାନ୍ତି | ଟ | ୧୦ |
| ବିପିନ କାନୁନ୍‌ଗୋ | ଟ | ୧୦ |
| ରାମଚନ୍ଦ୍ର ପଟେଲ | ଟ | ୧୦ |
| ଅନନ୍ତ ଚରଣ ପରିଡ଼ା | ଟ | ୧୦ |
| ଗିରୀଶ ମିଶ୍ର | ଟ | ୧୫୦ |

ପ୍ରଜାତନ୍ତ୍ର ପ୍ରେସ, କଟକ-୨

# ନୂତନ ଉତ୍ସବ

ଶେଷରେ ଚନ୍ଦ୍ରକୁ ଚାରିଜଣ କାନ୍ଧରେ ଉଠାଇଲେ । ଯଦିବା ମୋର କାନ୍ଧ ପକାଇବା ଉଚିତ ଥିଲା, ତଥାପି ମୁଁ ଦୂରରେ ଠିଆ ହେଲି ।

ମନ୍ଦିରଫେଣାରେ ଟେକା ବାଜିଲେ ଯେପରି ହଠାତ ଅସମ୍ଭବ କୋଳାହଳ ଉଠେ ସେହିପରି ହଠାତ୍ ଆଉଥରେ କଲରୋଳ ଉଠିଲା । ଶେଷଦର୍ଶନ ପାଇଁ କେତେଜଣ ସ୍ତ୍ରୀ ଲୋକ ମୁହଁରେ ଲୁଗାଚାପି ଜଳି ମାଡ଼ିଧରି ବି ଭେଁ ଭେଁ କରି ଉଠିଲେ । ଠିକ୍ ସେତିକବେଳେ ମୋ ଭିତରେ ଗୋଟିଏ କିମିତି ହୋଇଗଲା । ମୋ ଭିତରୁ ଗୋଟିଏ ଅଜବ ଶବ୍ଦ ବାହାରି ସାରା ପୃଥିବୀରେ ମାଡ଼ିଗଲା — ତାହାଲେ ଚନ୍ଦ୍ର ଚାଲିଗଲା !

ଚନ୍ଦ୍ର ମୋର ବନ୍ଧୁ । ସେ କଲିକତାରେ ରହି ପଢୁଥିଲା । ଆଜି ସକାଳରେ ତାର ଶବ ଏଠାରେ ଆସି ପହଞ୍ଚିଛି ।

ତାର ମୃତ୍ୟୁ ପାଇଁ କିଏ ବା କାହିଁକି ପ୍ରସ୍ତୁତ ହୋଇ ରହିଥିଲା ! ଶୁଣାଯାଏ ସନ୍ଧ୍ୟା-ବେଳେ ତାର ଡାହାଣ ପାଖ ପେଟରେ ସାମାନ୍ୟ ଯନ୍ତ୍ରଣା । ରାତିରେ ସେଇଟା ବଢ଼ିଗଲା । ଡାକ୍ତରଖାନା ନିଆଗଲା । ସକାଳ ଦଶଟାରେ ଯନ୍ତ୍ରଣା ଭଲ ହୋଇଗଲା । ସନ୍ଧ୍ୟା ପର୍ଯ୍ୟନ୍ତ ସ୍ୱାଭାବିକ । ଯନ୍ତ୍ରଣାଟା କେଉଁଠି ଯେମିତି ଲୁଚି ବସି ପ୍ରସ୍ତୁତ ହେଉଥିଲା । ହଠାତ୍ ସନ୍ଧ୍ୟାବେଳେ ପୁଣି ଆରମ୍ଭ । ଅନେକ ଡାକ୍ତର, ନର୍ସ, ସାଙ୍ଗସାଥୀ, ଆତ୍ମୀୟ ସ୍ୱଜନଙ୍କ ମଝିରେ ବି ହଠାତ୍ ରାତି ଦଶଟାବେଳେ ସବୁ ଯନ୍ତ୍ରଣା ଧପ୍ କରି ବନ୍ଦ ହୋଇଗଲା । ତାପରେ ଟେଲିଗ୍ରାମ । ସକାଳେ ଶବ ଆସି ଘରେ ପହଞ୍ଚିଲା । ହଠାତ୍ ଘରର ସୁନ୍ଦର, ପାଠପଢ଼ୁଆ ତରୁଣ ଗୋଟେ ମରିଗଲେ ସବୁଠି ଯାହା ଯେପରି ହୁଏ ଠିକ୍ ସେମିତି । ମୁଁ ତ ହଠାତ୍ ବିଶ୍ୱାସ କରି ପାରିଲି ନାହିଁ । ତାର କଳା ପଡ଼ିଯାଇଥିବା ଶବଟାକୁ ଦେଖି ବି ବୁଝି ଉଠିବାକୁ ଡେରି ଲାଗିଲା ଯେ ଶବଟା ଚନ୍ଦ୍ରକାନ୍ତର ।

ଚନ୍ଦ୍ର ସହ ମୋର ବନ୍ଧୁତ୍ୱ ପ୍ରାୟ ତିନିବର୍ଷ ତଳେ । ଚନ୍ଦ୍ରର ଜଣେ ବନ୍ଧୁ ସହ ଦିନେ ଗପୁ ଗପୁ ତା ସହ ପରିଚୟ । ଆଉ ଦିନେ ହଠାତ୍ ସିନେମାହଲ୍‌ରେ ଗୋଟିଏ ଫାଇଟିଂ ଛବି ଦେଖି ଦେଖୁ ଚନ୍ଦ୍ର ଓ ତାର ବନ୍ଧୁକୁ ମୋ ଆଗ ସିଟରେ ଆବିଷ୍କାର କଲି ।

ସେଦିନ ପ୍ରଥମଥର ପାଇଁ ସେମାନଙ୍କ ସଙ୍ଗରେ ଚନ୍ଦ୍ର ଘରକୁ ଆସିଥିଲି । ସେ ଦିନ ଚନ୍ଦ୍ର ଖୁବ୍ ପିଆଇଥିଲା ।

ମୁଁ ଜାଣେ କୌଣସି ବନ୍ଧୁର ସାନଭଉଣୀ ସୁନ୍ଦରୀ ତରୁଣୀ ଓ ସ୍ନେହୀ ହୋଇଥିଲେ ବନ୍ଧୁତ୍ୱ ଠିକ୍ ରଖିବା ମୁସ୍କିଲ ହୋଇପଡେ । ମୁଁ ତ ଭିନ୍ନ ଚରିତ୍ରର ଲୋକ । ସୌନ୍ଦର୍ଯ୍ୟ ଦେଖିଲେ ମୁଁ ନିଜକୁ ଠିକ୍ ରଖିପାରେ ନାହିଁ । ସୁନ୍ଦର ନାରୀତ୍ୱ ଦେଖିଲେ ମୁଁ ମୁଗ୍ଧ ହୋଇଯାଏ । ତାରୁଣ୍ୟ ମୋତେ ଭୀଷଣ ଆକର୍ଷଣ କରେ । ସ୍ଥାନ କାଳପାତ୍ର ଉଚିତ୍ ଅନୁଚିତର ସୀମାରେଖା ଟପି ଅନୁଭବ, ପ୍ରାପ୍ତି ଉପଭୋଗ, ଇତ୍ୟାଦି ଶବ୍ଦ ମୋତେ ପାଗଳ କରି ପକାଏ । ଏସବୁ ସତ୍ତ୍ୱେ ବି ମୋର ଦର୍ଶନ ଭିନ୍ନ । ଚରିତ୍ରହୀନତା ପାପ, ଇତ୍ୟାଦି ଶବ୍ଦ ମୋ ପାଇଁ କେବଳ କେତେଗୁଡିଏ ଲଗାଲଗି ଅକ୍ଷର ହେଲେ ମଧ୍ୟ ଦେହ ଉପଭୋଗରେ ମୋର ବିଶ୍ୱାସ ନାହିଁ । ଉପଭୋଗ ପ୍ରାପ୍ତିରେ ଭାବପ୍ରବଣତା ଓ ସୂକ୍ଷ୍ମ ସୌନ୍ଦର୍ଯ୍ୟବୋଧ ନଷ୍ଟ ହୋଇଯାଏ ବୋଲି ମୋର ଧାରଣା । ମୋ ଜୀବନକୁ ତେଣୁ ଯେତେ ନାରୀ ଆସିଛନ୍ତି ସେମାନେ ସେମାନଙ୍କ ନାରୀତ୍ୱକୁ କ୍ଷତ ବିକ୍ଷତ କରାଇବାର ଇଙ୍ଗିତ ଦେଲେ ମଧ୍ୟ ସେମାନେ ସେମାନଙ୍କ ଆସିବା ମୁହୂର୍ତ୍ତ ପରି ଦାଗହୀନ ଆକର୍ଷିତ ହୋଇ ରହି ଯାଇଛନ୍ତି । ମୁଁ କେବଳ ନିଦାଘ ମଧ୍ୟାହ୍ନରେ ସଂପୂର୍ଣ୍ଣ ଥଣ୍ଡା ପାଣି ଭର୍ତ୍ତି ଗ୍ଲାସକୁ ହାତରେ ଉଠାଇଛି, ଦେଖିଛି ତନ୍ମୟ ହୋଇଛି, ପରମ ସ୍ନେହରେ ମୋର ଗାଲରେ ସେ ଗ୍ଲାସକୁ ଛୁଆଁଇ ନେଇଛି ଏବଂ ତାଫଳରେ ନିଦାଘର ଶୁଷ୍କତା ଅନେକ ପରିମାଣରେ କଟିଯାଇ ମୋ ଭିତରେ ଅନେକ ଜଳକଣା ଆରାମ ଆଣି ଦେଇଛନ୍ତି । ଫଳରେ ତା ପର ମୁହୂର୍ତ୍ତରେ ପୁଣି ନୂତନ ଗ୍ଲାସ । ତାର ସୁନ୍ଦର ଶୀତଳ ସ୍ୱଚ୍ଛ ଜଳ । ନୂତନ ଅନୁଭବ । ଦିବ୍ୟ ସୌନ୍ଦର୍ଯ୍ୟବୋଧରେ ମୁଁ କ୍ରମେ ଉଦ୍ଭାସିତ ଓ ପୁଲକିତ ହୋଇ ଉଠିଛି । ତେଣୁ କାନ ନ ଡେରିଲେ ବି ମୋର ରଙ୍ଗମଞ୍ଚର ନେପଥ୍ୟରେ ଅନେକ ନାରୀର କୋଳାହଳ ଶୁଣାଯାଏ ।

ମୋର ଏଇ ଦିଗଟି ବିଷୟରେ କହିଲେ ମୋତେ ଗୋଟିଏ ଶ୍ରେଷ୍ଠ ଘଟଣା ବା ଗଳ୍ପ କହିବାକୁ ଇଚ୍ଛାହୁଏ । ଦିନେ ଜଙ୍ଗଲରେ ବୁଲି ବୁଲି ମୁଁ କ୍ଲାନ୍ତ ଓ ଶୋଷିଲା ହୋଇ ଉଠିଲି । ଅବଶ୍ୟ ମୁଁ ଜଙ୍ଗଲକୁ ଶୀକାର କରିବା ପାଇଁ ବା ସୌନ୍ଦର୍ଯ୍ୟ ଦେଖିବା ପାଇଁ ଯାଇ ନଥିଲି । କଣ ଗୋଟିଏ ଖୋଜିବା ପାଇଁ ଯାଇଥିଲି । ଯେତେବେଳେ ବୁଝିପାରିଲି ମୋତେ ଭୀଷଣ ଶୋଷ, ସେତେବେଳେ ବାହାରିଲି ଝରଣାର ସନ୍ଧାନରେ । ଅନେକ ବୁଲିଲି । କିନ୍ତୁ ପାଣି କାହିଁ ? ଯେତେବେଳେ ସୂର୍ଯ୍ୟ ଢଳିବାକୁ ଆରମ୍ଭ କଲେ,ହଠାତ୍ ସେତେବେଳେ ମୋ ସାମ୍ନାର ଲତା ଡାଳପତ୍ର ଘୁଞ୍ଚାଇଦେଇ ଦେଖିଲି ଏକ ନିସ୍ତବ୍ଧ ସରୋବର । ହଠାତ୍ ଶୋଷଟା ବଢିଗଲା ସୁନ୍ଦର ପଥରର ପାହାଚପାଣି ପର୍ଯ୍ୟନ୍ତ । ସତେ ପାହାଚରେ ଯେପରି ଅଦୃଶ୍ୟ ଆମନ୍ତ୍ରଣ ଖୋଦିତ । ଅଥଚ ମୁଁ ସେଇଠି ପାହାଚରେ ବସିଗଲି ଓ ମନେ ମନେ କଳ୍ପନା କଲି ଖୁବ୍ ଦୂରକୁ

ଦୂରକୁ ଗୋଟିଏ ବିବର୍ଣ୍ଣ ନାଉରିଆହୀନ ନୌକା ଚାଲିଯାଉ ଥିବାର ଦୃଶ୍ୟ। କିଛି ସମୟ ପରେ ଜାଣିପାରିଲି ମୋର ଶୋଷ ମେଣ୍ଟି ଯାଇଛି ଏବଂ ମୁଁ ଯାହା ଖୋଜୁଥିଲି ତା ପାଇଯାଇଛି।

ମୁଁ ଜୀବନରେ ସମ୍ବେଦନର ଅନ୍ୱେଷଣ କରୁଁ କରୁଁ ଆଉ ନିଃସଙ୍ଗ ବିବର୍ଣ୍ଣ ନୌକା ଭାସିଯାଉଥିବାର ଦୃଶ୍ୟ କଳ୍ପନା କରୁଁ କରୁ ଅନେକ ବନ୍ଧୁ, ଶୁଭେଚ୍ଛୁ ଇତ୍ୟାଦିଙ୍କୁ ହରାଇଛି। ତେଣୁ ଚନ୍ଦ୍ର ଘରେ ପ୍ରଥମ ଦିନ ଚା' ପିଇଲାବେଳେ ମୁଁ ବେଶ୍ ବୁଝି ପାରିଲି ତା ସହ ବନ୍ଧୁତ୍ୱ ମଧ୍ୟରେ ଏକ ବିରାଟ ଉପସାଗର ରହିଯିବ, ଯାହାକୁ କେବଳ ସାମାୟିକ କୃତ୍ରିମ ହସ, ମନଭୁଲା କେଇପଦ କଥାର ଅସ୍ଥାୟୀ ସେତୁରେ ସଂଯୋଗ କରାଯାଇ ପାରିବ। ମୁଁ ସେଇ ପ୍ରଥମ ଦିନ ଗପରେ ମସ୍‌ଗୁଲ୍ ହୋଇ ଉଠିବାବେଳେ ହଠାତ୍ ସେ ଘରେ ଅନେକ ଆଲୋକ କେଉଁସବୁ ସନ୍ଧିରୁ ଜଳି ଉଠିଲେ। ମୁଁ ଆଲୋକିତ ହୋଇ ଦେଖିଲି ସାମ୍ନାରେ ଏକ ସୁନ୍ଦର ନାରୀମୂର୍ତ୍ତି, ଯାହା ପାଖରେ ବସି କେବଳ ପ୍ରେମ ନିବେଦନ କରିବାର ଇଚ୍ଛା ଜାଗେନା, ତାକୁ ହଠାତ୍ ଭୁଲାଇ ନେଇ ଖୁବ୍ ଦୂର ଜାଗାକୁ ପଳାଇବାକୁ ଇଚ୍ଛା ହୁଏ। ମୋତେ ସେଇ ମୁହୂର୍ତ୍ତରେ ମନେ ହେଲା ଝିଅଟାକୁ ଥରେ ଆଲିଙ୍ଗନ ନକଲେ ମୋ ଭିତରେ କ୍ୟାନସର ହୋଇଯିବ। ମୁଁ ସେଦିନ ତା ଠାରୁ ଚା' କପ୍ ଧରିନେଲାବେଳେ ତାର ଆଙ୍ଗୁଠି ଗୁଡ଼ାକୁ ଲକ୍ଷ୍ୟ କରିଥିଲି। ଆଙ୍ଗୁଠିରେ ବି ଅସମ୍ଭବ ତାରୁଣ୍ୟ ଓ ସୌନ୍ଦର୍ଯ୍ୟ ଭର୍ତ୍ତି ହୋଇ ଉଠିଛି।

ପ୍ରଥମ ଦିନ ତା ମୁହଁକୁ ଥରେ ମାତ୍ର ଚାହିଁ ତଳକୁ ମୁହଁ କରି ନେଇଥିଲି। ଚା' ପିଇଲାବେଳେ କୌଣସି ଆଡ଼େ ନଚାହିଁ ଚା କପ୍‌ର ଗୋଟିଏ କୋଣରେ ଲାଗି ରହିଥିବା ଦୁଧସର ଉପରେ ଦୃଷ୍ଟି ନିବଦ୍ଧ କରିଥିଲି ଯେପରିକି ସେଇଟା ଛଡ଼ା ପୃଥିବୀରେ ଆଉ କିଛି ଦେଖିବାର ପଦାର୍ଥ ନାହିଁ। ତାପରେ ବୋଧହୁଏ ପରିଣୀତା ମୋ ଉପରେ ଟିକେ ବେଶୀ ଆସ୍ଥା ସ୍ଥାପନ କରିଥିଲା।

ପୂର୍ବରୁ ମୋ ଜୀବନରେ ଯେଉଁମାନେ ଆସିଥିଲେ ସେମାନଙ୍କ ପାଇଁ ମୁଁ ମୋର ମାଂସାସୀ ବାଘଟାକୁ ଜନ୍ତା ଭିତରେ ବନ୍ଦ କରି ରଖିଥିଲି। ସେମାନେ ସେମାନଙ୍କ କ୍ୟାମେରାରେ ମୋ ଜନ୍ତା ଭିତରେ ଶୋଇ ହାଇ ମାରୁଥିବା ବାଘର ଫଟୋ ଉଠାଇ ଫେରିଯାଇଥିଲେ ଏବଂ ଅନେକଙ୍କୁ ସେ ଫଟୋ ଦେଖାଇ ମୋ ପ୍ରତି ପ୍ରଲୁବ୍ଧ କରାଇଥିଲେ। ପରିଣୀତାକୁ ଦେଖିଲା ପରେ ଓ ତା ସହ କଥାବାର୍ତ୍ତା ହେଲା ପରେ ମନେ ହେଲା ସେ ଇସ୍ପାତ ଜନ୍ତାଟା ଭାଙ୍ଗିଯିବାକୁ ଆଉ ଖୁବ୍ ଡେରି ନାହିଁ। ତେଣୁ ପରିଣୀତା ପାଇଁ ମୁଁ ଅନେକ ସ୍ୱଗତୋକ୍ତି ଉଚ୍ଚାରଣ କରିଥିଲି—ପରି, ତୁମେ ତୁମ ଗନ୍ତାଘରର ଚାବି କେଉଁ ଏକ ଅଗ୍ନାଅଗ୍ନି ବନସ୍ତରେ ହଜାଇ ଦିଅ, ଯେପରିକି ମୁଁ ତା ଖୋଜି ନ ପାଏ। ମୁଁ ତୁମ ପାଇଁ ଭାବପ୍ରବଣ ହେବାକୁ ଚାହେଁ। ମୁଁ ତୁମ ପାଇଁ ପାଗଳ ହେବାକୁ ମଧ୍ୟ ରାଜି ଅଛି।

ତାପରେ ପରିଣୀତା ପାଇଁ ଚନ୍ଦ୍ରକାନ୍ତ ସହ ମୋର ବନ୍ଧୁତ୍ୱ ବେଶ୍ ଜମିଗଲା । ମୁଁ ତା ସହ ପ୍ରତି ସଞ୍ଜରେ ବୁଲି ବୁଲି ସହର ପରିକ୍ରମା କଲି ଓ ତାଙ୍କ ଘରେ ପ୍ରତ୍ୟହ ଚା' ପିଇବାର ଯୋଜନା ସ୍ଥିର ହୋଇଗଲା । ମୁଁ କ୍ରମେ ପରିଣୀତା ପାଇଁ ବନ୍ଧୁ ବାନ୍ଧବ ଶୂନ୍ୟ ହୋଇ ଉଠିଲି । କ୍ରମେ ପରିଣୀତା ବି ମୋ ପାଖରେ ସ୍ୱାଭାବିକ ହୋଇ ଉଠିଲା ।

ଦିନେ ଶୁଣିଲି ଚନ୍ଦ୍ରକାନ୍ତ ପଡ଼ିଶାର ଗୋଟିଏ ବନ୍ଧୁକୁ ଭଲପାଏ । କିନ୍ତୁ ଚନ୍ଦ୍ରକାନ୍ତ ନିକଟରୁ କେବେ ତାର ଉଲ୍ଲେଖ ଶୁଣି ନାହିଁ । ଦିନେ ଚନ୍ଦ୍ରକୁ ଏ ବିଷୟରେ ପଚାରି ଜାଣିଲି ଚନ୍ଦ୍ର ଭଲପାଏ ଏକଥା ସତ୍ୟ । କିନ୍ତୁ କେବେ ତା ସହ ଦେଖାକରେ ନାହିଁ । କେବଳ ମର୍ଜିରେ ମର୍ଜିରେ ଅନେକ ରଙ୍ଗୀନ ସ୍ୱପ୍ନକୁ ନେଇ ଛଟି ପଟି ଯାଏ ଆସେ । ଝିଅଟି ଖୁବ୍ ନିରୋଳାରେ ଚନ୍ଦ୍ରକୁ ଦେଖା କରିବାକୁ ଚାହିଁଲେ ବି ଚନ୍ଦ୍ର କେବଳ ଜିମ୍ନାସିୟମ୍, ଖେଳ କସରତ୍, ଇତ୍ୟାଦି ନେଇ ବ୍ୟସ୍ତ ରହେ । ସ୍ୱାସ୍ଥ୍ୟ ଗଠନ କରେ । ଚରିତ୍ରବାନ୍ ହୋଇ ବ୍ୟକ୍ତିତ୍ୱ ଓ ମୁହଁର ଔଜ୍ଜ୍ୱଲ୍ୟ ବଢ଼ାଏ ।

ଦିନେ ପରିଣୀତା ହସି ହସି କହିଲା—ଆପଣଙ୍କ ଆଖିଯୁଡ଼ା ଚମତ୍କାର । ଆଖି ଦେଖିଲେ ଆପଣ ସରଳ, ପବିତ୍ର ଓ ଭାବପ୍ରବଣ ପରି ମନେ ହୁଅନ୍ତି ।

ମୁଁ ହସିଲି ଓ ମନେ ମନେ ଉଚ୍ଚାରଣ କଲି—ପରି, ତୁମେ କେବେ ଆଉ ମୋର ପ୍ରଶଂସା କରନାହିଁ । ମୁଁ ତୁମ ପାଇଁ ସରଳ ପବିତ୍ର ହୋଇ ରହି ଯାଇଛି କେବଳ ମୋର ଭାବପ୍ରବଣତା ବଢ଼ାଇବା ପାଇଁ ।

ଆଉ ଦିନେ ପରିଣୀତା କହିଲା— ଆପଣ କେବେ କୌଣସି ଝିଅକୁ ଭଲ ପାଇ ନାହାନ୍ତି ? କାହା ସହ ହୃଦୟର ଦିଆ ନିଆ କରି ନାହାନ୍ତି ?

ମୁଁ ହସିଲି ଓ ମନେ ମନେ କହିଲି— ଭଲ ପାଇଛି ଅନେକଙ୍କୁ କିନ୍ତୁ କାହାକୁ ହୃଦୟ ଦେଇ ନାହିଁ । କେବଳ ମୋର ହୃଦୟର ଛବି ଦେଖିଛି ଓ ଦେଖାଇଛି ।

ଅନ୍ୟ ଦିନେ ପରିଣୀତା କହିଲା— ଆପଣ ଖୁବ୍ ପିଲା ଅଛନ୍ତି । ଆପଣଙ୍କ ପିଲାଳିଆମି ଯାଇନାହିଁ ।

ମୁଁ ସେ ଦିନ ମନେ ମନେ ନିଷିଦ୍ଧ ଶବ୍ଦ ସବୁ ଉଚ୍ଚାରଣ କରିଥିଲି—ପରି, ମୁଁ ଆଦୌ ପିଲା ନୁହେଁ । ସାମାନ୍ୟ ଇଚ୍ଛା କରିଥିଲେ ମୋର ଏତେବେଳକୁ ପିଲା ହୁଅନ୍ତେଣି !

ଆଉ ଥରେ ପରିଣୀତା କହିଲା— ଭାଇର ସବୁ ସାଙ୍ଗମାନଙ୍କ ଅପେକ୍ଷା ଆପଣ ଖୁବ୍ ଭଲ । ଆପଣ ଖୁବ୍ ବିଶ୍ୱାସୀ ।

ମୁଁ ସେଦିନ ହୁଏତ ଚିତ୍କାର କରି ଉଠନ୍ତି, କିନ୍ତୁ କଲି ନାହିଁ । କେବଳ ଆଖି ବନ୍ଦ କରି ଖୁବ୍ ଭିତରେ ଉଚ୍ଚାରଣ କଲି— ପରି, ତୁମେ ମୋ ଠାରୁ ଦୂରରେ ରୁହ । ମୋତେ ଏତେ ବିଶ୍ୱାସ କର ନାହିଁ । ମୁଁ ଆଉ ବିଶ୍ୱାସୀ ହୋଇ ରହି ପାରିବିନି । ତୁମର ଏ ବିଶ୍ୱାସ ଦେଖି ମୋର ନିଃଶ୍ୱାସ ବନ୍ଦ ହୋଇ ଯାଉଛି । ମୁଁ ଜାଣେ ନାହିଁ କେଉଁ ମୁହୂର୍ତ୍ତରେ ତୁମ ସହ ଦୁର୍ଘଟଣା ଘଟେଇ ବସିବି । ସେତେବେଳେ ହୁଏତ ତୁମେ ଠିକ୍ ଠିକ୍ ବୁଝି ପାରିବ ମୁଁ କେତେ ଭଲ । ପରୀଟା ମୋର, ତୁମେ ମୋଠାରୁ ଦୂରେଇ ଯାଅ, ମୋ ପାଇଁ ବିରଳ ହୋଇଯାଅ, ଦୁର୍ଲ୍ଲଭ ହୋଇଯାଅ । ମୋ ପାଇଁ ଦୁଷ୍ପ୍ରାପ୍ୟ ହୋଇ ଉଠ । ନ ହେଲେ ଏ ସୁନ୍ଦର ପବିତ୍ର ଭାବପ୍ରବଣତାର ଫୁଲ ଝରିପିବାକୁ ବେଶୀ ସମୟ ଲାଗିବନି ।

ଅବଶ୍ୟ କଲିକତା ଯିବା ପୂର୍ବରୁ ଚନ୍ଦ୍ରକାନ୍ତ ମୋ ଉପରେ ସାମାନ୍ୟ ବିରକ୍ତ ହୋଇ ଉଠିଥିଲା, ପରୀ ମୋର ବେଶୀ ପ୍ରଶଂସା କରୁଥିଲା ବୋଲି ଆଉ ଖୁବ୍ ବେଶୀ ବିଶ୍ୱାସ କରୁଥିଲା ବୋଲି । ସେ ମୋ ଅତୀତର ସବୁ ଘଟଣା, ସବୁ ନାରୀ ଘଟିତ ବ୍ୟାପାର ଜାଣିଥିଲା । ତାର ଧାରଣା ଥିଲା, ସବୁ ନାରୀ ଦେହକୁ ନେଇ ଖେଳ ଖେଳିବାରେ ମୁଁ ଅଭ୍ୟସ୍ତ । ମୁଁ ନାରୀର ସନ୍ନିଧ ଚାହେଁ ଏକଥା ସତ୍ୟ; କିନ୍ତୁ ମୁଁ କେବେ ଚନ୍ଦ୍ରକୁ ବୁଝାଇ ନଥିଲି ଗୋଟିଏ ଫୁଲ ତୋଳି ଆଣି ତାକୁ ଶୁଙ୍ଘି ହାତରେ ଦଳି ମକଚି ପକାଇବା ଆଉ ସେ ଫୁଲର ଖୁବ ପାଖେ ପାଖେ ରହି ସେ ଫୁଲର ସୌନ୍ଦର୍ଯ୍ୟ ଆଉ ସୌରଭରେ ମୁଗ୍ଧ ହେବାର ପାର୍ଥକ୍ୟ । ତେଣୁ ସେ ବେଶ୍ ଆତଙ୍କିତ ହୋଇ ଉଠିଥିଲା । ମୁଁ ମୋର ଜୀବନ ଦର୍ଶନକୁ ଠିକ୍ ଠିକ୍ ମାନି ଚାଲିଥିଲି । ତେଣୁ ମୁଁ ଥିଲି ପରୀର ପ୍ରେମିକ ଓ ପ୍ରହରୀ ।

ଚନ୍ଦ୍ରକାନ୍ତ କଲିକତା ଚାଲିଯିବା ପରେ ପରୀ ସହ ମୋର ସଂପର୍କ କମେଇ ଦେଇଥିଲି । କାରଣ ପରୀର ବାପା ମା ସାଙ୍ଗ ସାଥୀ ଶୁଭେଚ୍ଛୁ ପଡୋଶୀ ସମସ୍ତେ ଆମକୁ ସନ୍ଦେହ କରିବା ଆରମ୍ଭ କରି ଦେଇଥିଲେ । ପରୀ ଦୁଃଖ ପାଇବ ବୋଲି ମୁଁ ଖୁବ୍ ଯନ୍ତ୍ରଣା ପାଉଥିଲେ ବି ତାଠାରୁ ମୋର କଳା ଛାଇଟାକୁ ଦୂରେଇ ରଖିଥିଲି ।

କିନ୍ତୁ ଦୂରରେ ରହି ବି କେଉଁ ସବୁ ବିଷର୍ଣ୍ଣ ସନ୍ଧ୍ୟା, ନିର୍ଜ୍ଜନ ମଧ୍ୟାହ୍ନରେ ପ୍ରାୟ ଗୋଟିଏ ପ୍ରକାର ଦୃଶ୍ୟ ଦେଖୁଥିଲି । ପରୀ ମୁହଁରେ ସ୍ନିଗ୍ଧ ସୁନ୍ଦର ପବିତ୍ର ହସ । ତା ପଛରୁ ଏକ ପ୍ରକାର ନୀଳ ଆଲୋକ ଉଠି ପରି ବୃତ୍ତାକାରରେ ସମଗ୍ର ବିଶ୍ୱରେ ପରିବ୍ୟାପ୍ତ ହୋଇ ଯାଉଛି । ସେ ଆଲୋକ ବୃତ୍ତର କେନ୍ଦ୍ରରେ ମୋର ଶ୍ରେଷ୍ଠ ପରୀଟା ଛିଡା ହୋଇ କେମିତି ଏକ ବିଶୁଦ୍ଧ ଆଖିରେ ମୋତେ ଚାହିଁଛି ।

ତାପରେ ଏଇ ନିଦାରୁଣ ସମ୍ବାଦ । ଚନ୍ଦ୍ରକାନ୍ତ ଅକସ୍ମାତ୍ ସବୁ ଅନୁଭବ, ଉପଲବ୍ଧି ଭାବପ୍ରବଣତା, ଭଲ ପାଇବା, ଇତ୍ୟାଦିକୁ ଝୁଟା ପ୍ରମାଣ କରି କେବଳ ରାମନାମ ସତ୍ୟ ହେ ପ୍ରମାଣ କରି ଅନେକ ଦୂରକୁ ପଳାଇଗଲା ।

ମୁଁ ଜାଣେ ଚନ୍ଦ୍ରକାନ୍ତ ତାର ଚରିତ୍ରକୁ ସୁନ୍ଦର ଗୋଟାଏ ବଡ଼ ଗୋପନ ପ୍ରେମପତ୍ର ଭଳି ସମସ୍ତଙ୍କ ଅଗୋଚରରେ କେଉଁ ଏକ ସିନ୍ଦୁକରେ ସଯତ୍ନରେ ରଖିଥିଲା । କିନ୍ତୁ କେଉଁ ଏକ ଅଦୃଶ୍ୟ ମାନ୍ତ୍ରିକ ଅନ୍ୟମନସ୍କରେ ସେ ସବୁ କାଟି ଛିନ୍‌ଭିନ୍ କରିଦେଲା ।

ଚନ୍ଦ୍ରକାନ୍ତର ମୃତ୍ୟୁ ସମ୍ବାଦ ଶୁଣିବାପରେ ମୁଁ ଖୁବ୍ ଭାଙ୍ଗି ପଡ଼ିଲି । ଜୀବନଟା ଯେ ମୋର ବୃଥା ହୋଇଗଲା । ଜୀବନର ଅନେକ ଦ୍ୱାର ଖୋଲିବା ପୂର୍ବରୁ ସେ ଚାଲିଗଲା । ପୃଥିବୀର ଅନେକ ଅନୁଭବ ଅନେକ ଉପଲବ୍ଧି ସେ କରିପାରିଲା ନାହିଁ । କେମିତି ଏକ ପ୍ରତିହିଂସାର ଝପଟା ମୋ ଭିତରେ ଛପା ହେବାକୁ ଲାଗିଲା । ଏତେଦିନର ଜୀବନର ଦର୍ଶନ କେମିତି ଓଲଟା ହେବାକୁ ଆରମ୍ଭ କଲା ।

ସେ ଦିନ ସନ୍ଧ୍ୟାରେ ଯେତେବେଳେ ଚନ୍ଦ୍ରକାନ୍ତର ଶବ ଆସି ପହଞ୍ଚିଲା ମୁଁ ଦେଖିଲି ତାର ସୁନ୍ଦର ସ୍ୱାସ୍ଥ୍ୟ ପଚି କଳା ପଡ଼ିଯାଇଛି । ତାର ବଳିଷ୍ଠ ବଳିଷ୍ଠ ଖେଳାଳୀର ହାତ ଗୋଡ଼ ଫିକା ହୋଇଯାଇଛି । ତାର ସୁନ୍ଦର ନାକ ଠିକ୍ ଗୋଟିଏ ଦରପୋଡ଼ା କାଠଭଳି ଦେଖାଯାଉଛି । ମୋ ଭିତରେ ଅନେକ ପ୍ରତିଦ୍ୱନ୍ଦ୍ୱୀ ଜାଗି ଉଠିଲେ । ପ୍ରତିଦିନ ପରିଷ୍କାର ପରିଚ୍ଛନ୍ନ ହୋଇ ଦେହଟାକୁ ଦାଗହୀନ ହୋଇ ସୁନ୍ଦର ପବିତ୍ର କରି ଗଢ଼ିବାର କିଛି ମାନେ ହୁଏନା । ମୋତେ ମନେହେଲା ପୃଥିବୀର ସବୁଟା ମିଛ । ରାମନାମ ସତ୍ୟ ହେ ବି ମିଛ । ଶରୀରଟା ହିଁ ସତ୍ୟ । ଶରୀରର ସ୍ଥିତି ବିନା ପୃଥିବୀର ସବୁ ଶୂନ୍ୟ, କିଛି ମାନେ ହୁଏନା । ସୂକ୍ଷ୍ମ ଭାବ-ପ୍ରବଣତା ନିରର୍ଥକ । ଦେହର ଦାହ, ପ୍ରାପ୍ତି ଉପଭୋଗ ଇତ୍ୟାଦି ସ୍ଥୂଳ ଉପଲବ୍ଧି ହିଁ ପ୍ରକୃତ ବସ୍ତୁ । ମନ ହୃଦୟ ବିବେକର ସୂକ୍ଷ୍ମ ଆକାଂକ୍ଷା, ନାନ୍ଦନିକତା, ତନ୍ମୟତା, ଇତ୍ୟାଦି ଅର୍ଥହୀନ । ଚରିତ୍ର, ପାପ, ପୁଣ୍ୟ, ଇତ୍ୟାଦି ଶବ୍ଦ ମୃତ୍ୟୁ ପାଇଁ ନିରର୍ଥକ । ମୃତ୍ୟୁ ଅବଶ୍ୟମ୍ଭାବୀ । ମଣିଷର ସବୁ ନ୍ୟାୟ, ଧର୍ମବୋଧ, ପବିତ୍ରତା ସତ୍ତ୍ୱେ ଯଦି ଅତର୍କିତରେ ମୃତ୍ୟୁ ଆସେ ତାହାଲେ ଜୀବନକୁ ଉପଭୋଗ କରି, ଅଭିଳାଷରେ ପୂର୍ଣ୍ଣତା ଆଣି ମୃତ୍ୟୁ ପାଇଁ ପ୍ରସ୍ତୁତ ହେବା ଉଚିତ ।

ଚନ୍ଦ୍ରକାନ୍ତକୁ ନେଇ ସେଇ ଭୌତିକ ନିରସ ସ୍ଲୋଗାନ ଦେଇ ଶ୍ମଶାନକୁ ଚାଲିଗଲା ପରେ ମୁଁ ପଦ୍ମା ପାଖକୁ ଗଲି । ପଦ୍ମା ବିଛଣାରେ ପଡ଼ି କାନ୍ଦୁଥିଲା । ମୁଁ ଲୁହ ପୋଛିଦେଲି । ତାକୁ ମୋ ସହ ଆମ ଘରକୁ ଆସିବା ପାଇଁ କହିଲି । ତାର ନାସ୍ତିବାଣୀ ମାନିଲି ନାହିଁ । ତାକୁ ଜୋର କରି ସଙ୍ଗରେ ନେଇ ଆସିଲି ସାନ୍ତ୍ୱନା ଦେବାପାଇଁ । ଆମ ଘରର ସମସ୍ତେ

ପେଣ୍ଟ ଖସିଗଲା । ସେ ଉଠିଲା । ଖିପ୍ରଣ କ୍ରୋଧରେ ପ୍ରତିଶୋଧ ନେବାପାଇଁ ସେ ତା' ଦେହରେ ଛେପ ପକାଇ ଦେଲା ଏବଂ ଦୌଡ଼ିଲା । ଆଉ ମଣିଷଟି ସେଇଠାରେ ଉପାୟ ନପାଇ ଚର୍ ର୍ ଚର୍ ର୍ ପଶ୍ଚା କଲା । ତା'ପରେ ସମସ୍ତେ ହୋ ହୋ ହୋଇ ଏଣେ ତେଣେ ଦୌଡ଼ିଲେ । ଜଣେ ମୋ ଦେହରେ ତା'ର ଧୂଳିବୋଳା ଦେହରେ ଧକ୍କା ଦେଲା ।

ଏବଂ ଠିକ୍ ସେଇକବେଳେ ମୋ ଭିତରୁ ଝିଂ ଝିଂ କରି ଟେଲିଫୋନ ବାଜି ଉଠିଲା—କୁନା, କୁନା କୁନା ମୋର ! ତୁ ମୋତେ ଫେରାଇନେ, ମୋ ପାଖକୁ ଚାଲିଆ, ମୋତେ କବର ଭିତରୁ ଉଦ୍ଧାର କର । ମୋ କୁନାଟା, ବଡପାଟିରେ କାନ୍ଦିବାକୁ ଅଭ୍ୟାସ କର । ବଡ ପାଟିରେ କାନ୍ଦିବା ସ୍ୱାସ୍ଥ୍ୟ ପକ୍ଷରେ ହିତ କାରକ । ମୁଁ ବି ଉତ୍ତର ଦେଇଗଲି—କିନ୍ତୁ କିପରି ? ଲୋକେ ଯେ ମୋତେ ପାଗଳ କହିବେ । ତୁମକୁ ଫେରାଇ ଆଣିବା ଏକାନ୍ତ ଅସମ୍ଭବ । କାରଣ ମୁଁ ଆଉ କୁନା ନୁହେଁ, କହ୍ନେଇ, କହ୍ନେଇବାବୁ ।

ସେତେବେଳେ ନର୍ଦ୍ଦମା ଉପରର କାଉ ଆଉ କୁକୁର କୁଆଡେ ଚାଲିଗଲେଣି । କୁକୁରଛୁଆଟି କେଁ କେଁ କରି ନର୍ଦ୍ଦମା ଉପରେ ହାମୁଡେଇ ପଡିଥିଲା । ମୋର ଖୁବ୍ ଭିତରୁ ଉଠେଇ ଆସୁଥିବା ଜମାଟ ମେଘ ତରଳି ଗାଲ ଉପରଦେଇ ବହିଯିବାକୁ ଲାଗିଲା । ମୁଁ ପ୍ରଥମେ ଅସ୍ଫୁଟ ଚିତ୍କାର କଲି ଏବଂ ପରେ କୁନ୍ଥେଇ କୁନ୍ଥେଇ ଭେଁ ଭେଁ କରି କାନ୍ଦିବାକୁ ଲାଗିଲି ।

( ୨ )

( କ )

ଦିନେ ସକାଳେ—

—ଦେଖ, ମୋତେ ଖୁବ୍ ଶୀତ ଲାଗୁଛି ।

—କାହିଁ ନାହିଁତ ।

—ମୋତେ ଶୀତ ଲାଗୁଛି, କବାଟ ବନ୍ଦ କରିଦେବ ।

—ବୋଉ ସନ୍ଦେହ କରିବ ।

—ଏଥିରେ ସନ୍ଦେହ କରିବାର କ'ଣ ଅଛି ?

—ସନ୍ଦେହ କରିବେ ନା ? ତୁମେ ମୁଁ ଗୋଟିଏ ଘରେ ।

—ଭିତରପଟୁ ନଲଗାଇ କେବଳ ଆଉଜେଇ ଦେବା ।

ମୁଁ କବାଟ ଆଉଜେଇ ଦେଲି; କିନ୍ତୁ ଶୀତ ବଢିଗଲା । କାନ୍ଥରେ କେଉଁ ଏକ ଏଲେକ୍ସଜାଣ୍ଡ ନାଙ୍ଗ ଛବି, କ୍ୟାଲେଣ୍ଡରରେ ଝରଣା, ଟେବୁଲ ଉପରେ ଫୁଲଦାନି ଝର୍କାପର୍ଦ୍ଦା

ଫାଙ୍କରେ ଚେନାଏ ଆକାଶ । ସବୁଥିରେ ଖୋଜି ପାଇଲି କବିତା, ଖୋଜି ପାଇଲି ନାରୀତ୍ୱ । ଦେବୀର ଆଖିକୁ ଚାହିଁଲି । ତା' ଆଖିରେ ଏଲୋଇସ୍ତ ନାଚ ଝରଣା, ଫୁଲଦାନୀ, ଆକାଶ ସବୁକିଛି । ମୁଁ ଧୀରେ ଧୀରେ ଦେବୀର ମୁହଁ ଉପରକୁ ନଇଁ ଆସିଲି ।

—ଦେବୀ ତୋର ଆଜି କଲେଜ ନାହିଁକି ? କଲେଜ ସମୟ ହୋଇଗଲାଣି ଯେ ।

ମୁଁ ପୂର୍ବ ବନ୍ଧୁକୁ ଫେରିଆସି ଦେଖିଲି ଦେବୀର ବୋଉ । ହାତରେ ଆଉଜା କବାଟ ଫିଟାଇ ଦେଲେ । କିନ୍ତୁ ତାଙ୍କ ଆଖିରେ ଗ୍ରୁଟିପିଟି ହେଉଥିଲା ସନ୍ଦେହ ଆଉ ବିରକ୍ତି ।

( ଖ )

ଏଏ ହେଉଛି ଦେବୀ, ସେ ଥିଲା ଦେବୀ, ମୋର ଖେଳ ସାଥି ସହପାଠିନୀ ଓ ପଡ଼ୋଶିନୀ । ମୋର ମନେଅଛି ମୋ ବହି ମଲାଟ ଉପରେ ଲେଖାଥିବା 'ଚତୁର୍ଥ ଶ୍ରେଣୀର ଛାତ୍ର'କୁ ସେ ଛାତ୍ରୀ ଲେଖି ଦେଇଥିଲା । ମୁଁ ମଲାଟ ବଦଳାଉଥିଲି ଆଉ ତା' ଉପରେ ବିରକ୍ତ ହେଉଥିଲି । ଦିନେ ଆମେ ସ୍କୁଲପାଖ ପାର୍କରେ ସିମେଣ୍ଟ ବେଞ୍ଚ୍‌ରେ ବସିଥିଲୁ । ପାଖ ନଡ଼ିଆ ଗଛ ତଳ ସିମେଣ୍ଟ ବେଞ୍ଚ୍‌ରେ ଦୁଇଜଣ ବସିଥିଲେ । ଜଣେ ପୁଅ ଜଣେ ଝିଅ । ବସି ଗପ ହେଉଥିଲେ ଆଉ ଚିନାବାଦାମ ଖୋଳପା ଛଡ଼ାଇ ପାଟିରେ ପକାଉଥିଲେ । ମୁଁ ଦେଖିଲି ଏଣେ ତେଣେ ଚାହିଁ ପୁଅଟି ଚୁମା ଖାଇଲା ଆଉ ଝିଅଟି ତାକୁ ଠେଲିଦେଇ ବେଞ୍ଚ କୋଣକୁ ଘୁଞ୍ଚିଗଲା । ମୁଁ ଦେବୀକୁ ଦେଖାଇ ଦେଲି । ଦେବୀ କହିଲା ବାଦାମ କିଣିଆଣିବାକୁ । ମୁଁ ରାସ୍ତା ଉପରକୁ ଦୌଡ଼ିଲି । ବାଦାମ ନେଇ ଦୁହେଁ ଚୋପା ଆଉଁରିବା ଆରମ୍ଭ କଲୁ । ମୁଁ ଏଣେ ତେଣେ ଚାହିଁ ଦେବୀ ଓଠରେ ଚୁମା ଖାଇଲି । ଦେବୀ ମୁହଁ ପୋଛି ଦେଲା, କହିଲା—ହେଃ, ତୋ ଛେପବୁଡ଼ା ମୋ ପାଟିକୁ ଚାଲିଗଲା । ଥୁ ଥୁ କରି ଅଧାଚୋବା ବାଦାମ ସହ ଧଳା ବହଳିଆ ଛେପ ପକାଇଲା । ଠିକ୍ ସେଇ ମୁହୂର୍ତ୍ତରେ ମୋ କାନରେ କାହାର ଆଙ୍ଗୁଠିର ସ୍ପର୍ଶ ପାଇ ପଛକୁ ଫେରି ଚାହିଁ ଦେଖିଲି ବାପା ।

ବାପା ସେଦିନ ମା'ଙ୍କୁ ହସି ହସି କହିଲେ—ଦେଖିଲ ତୁମର କୁନାକୁ, ଦେବୀକୁ ଖରାବେଳେ ପାର୍କରେ ନେଇ ଚୁମା ଖାଉଥିଲା, ମୁଁ ପହଞ୍ଚିଲି ବୋଲି ସିନା ନହେଲେ—

ଆଖି ଦେଖୁଛି ତଥିର ଆକଟରେ ସଜା ହୋଇଥିବା ବନ୍ଧ ଓ ଖେତର ବାଡରେ ଝୁଲୁଥିବା ତଥିର ଦୁଇଟା ନୂଆଶାଢ଼ୀ । ସ୍ନାୟୁ ଅନୁଭବ କରୁଛି ତଥିର ଅଦୃଶ୍ୟ ସ୍ପର୍ଶ ଓ ଅଶ୍ଳେଷ । ତଥିର ରନ୍ଧା ଶୁଖୁଆର ବାସ୍ନା ମୋର ସମସ୍ତ ଜୀବକୋଷରେ ସଞ୍ଚାରିତ ହୋଇଯାଉଛି । ମୋତେ ଆଗରୁ ଶୁଖୁଆ ଭଲଲାଗୁ ନ ଥିଲା । ତାର ବାସ୍ନା ମୁଁ ସହ୍ୟ କରିପାରୁ ନ ଥିଲି, କିନ୍ତୁ ଦିନେ ତଥି ଓଡ଼ିଆ ଆଉ ଓଡ଼ିଆର ଖାଦ୍ୟ ଉପରେ ନାତିଦୀର୍ଘ ଭାଷଣ ଦେଇ ବୁଝାଇଦେଇଥିଲା ଯେ ମାଛ ନ ମିଳିଲେ ବଂଚିବା ପାଇଁ, କେବଳ ବଂଚିବା ପାଇଁ ଶୁଖୁଆ ଖାଇବାକୁ ପଡ଼ିବ । ସେ ଦିନରୁ ମୁଁ ଚଳେଇ ନେଇଛି । କାହିଁକି କେଜାଣି ଶୁଖୁଆ ଆଉ ଖରାପ ଲାଗେ ନାହିଁ । ଏବେ ବଜାରରେ ମାଛ ମିଳୁନି । ତଥିର ବା ଦୋଷ କଣ ? ଆଜି ରବିବାର, ତେଣୁ ସେ ନିଜେ ରାନ୍ଧୁଛି । ଅନେକ ଦିନରୁ ମୁଁ ଘର-ରନ୍ଧା ଭାତ ଖାଇନି । ମୋର ଘର ନଈଆରପାରି ଗାଁରେ । ସେଇଠି ମୋ ରକ୍ତର ସଂପର୍କ ଥିବା କେତେ ଜଣ ମଣିଷ ଅଛନ୍ତି —ମା, ଭାଇ ଭଉଣୀ । ଏ ସହରରେ ମୋର ନିଜର କେହି ନାହିଁ । ମୁଁ କ୍ୱଚିତ୍ ଚିରକାଳ ରନ୍ଧାର ବାସ୍ନା ଶୁଂଘେ । କାରଣ ମୁଁ ସବୁଦିନେ ହୋଟେଲରେ ଖାଏ । ମୋ ଭଳି ଲୋକଙ୍କ ପାଇଁ ବୋଧହୁଏ ଏତେ ବଡ ବଡ ହୋଟେଲ, ଏତେ ହୋଟେଲର ବିଜ୍ଞାପନ, ମାସର ଆରମ୍ଭରେ ଦରମା ଟଙ୍କାର ଅର୍ଦ୍ଧାଧିକ ଟଙ୍କା ଗାଁ ଠିକଣା ଲେଖି ମନିଅର୍ଡର ଫର୍ମ ଫରଣ୍କେରେ । ବାକି ଟଙ୍କାର ପ୍ରାୟ ସବୁ ଅଂଶ ହୋଟେଲ-ମାଲିକ ହାତରେ ଧରାଇଦିଏ । ତା ପରେ ଏକ ତାରିଖରୁ ତିରିଶ ତାରିଖ ପର୍ଯ୍ୟନ୍ତ ହୋଟେଲରେ ଏକ ଲମ୍ବା ବନ୍ଧେଇ ଖାତାରେ ତାରିଖ ଦେଇ ପ୍ରତିଦିନ ମିଲ୍‌ର ଦାମ ଲେଖିଦିଏ । ହୋଟେଲର ଦାଢ଼ି ରଖିଥିବା ନନା ମା' ଭଳି ଖାଇବାକୁ ଦିଏ । ଯେପରି ମା' ଯାହା ରାନ୍ଧେ ଯାହା ଖାଇବାକୁ ଦିଏ ସେଥିରେ କିଛି ପ୍ରତିବାଦ ନାହିଁ, କେବଳ ଅସମ୍ଭବ ପରିତୃପ୍ତି ନେଇ ଖାଏ, ସେହିପରି ପ୍ରଥମେ ପ୍ରଥମେ ହୋଟେଲ ନନାକୁ କିଛି କହୁ ନ ଥିଲି । ସେ ତା ମନଇଚ୍ଛା ଦେଇଯାଏ । ମୁଁ ଖାଇସାରି ଦାମ୍‌ଟା ଖାତାରେ ଲେଖିଲାବେଳେ ସଚେତନ ହୁଏ ଯେ ସେଇ ହାରରେ ଖାଇଲେ ହୋଟେଲ ପାଇଁ ଉଦ୍ଦିଷ୍ଟ ଟଙ୍କା ଦୁଇ ସପ୍ତାହରେ ଶେଷ ହୋଇଯିବ । ତଥାପି ନନାକୁ କାହିଁକି କେଜାଣି ଆତ୍ମୀୟ ବୋଲି ମନେହୁଏ । କିନ୍ତୁ ଦିନେ ହଠାତ୍ ସବୁ ଆତ୍ମୀୟତା ଭୁଲି ନନା ଉଦ୍ଦେଶ୍ୟରେ ପାଟି ଖୋଲିଲି—ଶୁଣିଲ ନନା, ଏଥର ହାଫ୍ ପ୍ଲେଟ ମାଂସ ଦେବ, ଫୁଲ୍ ଦେବ ନାହିଁ । ଦେଶର ଅବସ୍ଥା ଖରାପ; ଆଉ ତା ଛଡ଼ା ଫୁଲ୍‌ପ୍ଲେଟ ମାଂସରୁ ଅଧେ ତ ଦାନ୍ତ ଭିତରେ ରହିଯାଉଛି, ଆଉ ଅଧେ ପାକସ୍ଥଳୀ ପହଞ୍ଚିଲେ ବି ହଜମ ହେଉନି । ଦାଢ଼ି ଭିତରୁ ନନାର ଧଳା ଦାନ୍ତ ଦେଖାଯାଏ—କର୍ମଅନୁସାରେ ଅନ୍ନ । ଆପଣଙ୍କ ଭଳି ବଡ ବୃକଦାଆ ଯଦି ଫୁଲ୍‌ପ୍ଲେଟ ମାଂସ ନ ଖାଇବେ ତା ହେଲେ ଖାଇବ

**ମୁଁ ଓ ମୋର ହୋଟେଲ**

ଆଉ କିଏ ? ତାପରେ ସେ ମୋର ପୋଷାକ-ପରିଚ୍ଛଦ ଉପରେ ଆଖି ପହଁରାଇ ନିଏ । ମୁଁ ବୁଝିପାରେ, ମୋ ଦେହରେ ଟେରେଲିନ୍ ଟେରିକଟ୍‌ର ରଂଗୀନ ପ୍ରସେସନ ଦେଖି ମୋର ଦରମାର ଆକାରଟା ଅନୁମାନ କରିନେଇଛି । ନନା ପ୍ରଶ୍ନ ଥିବା କେମିତି କେଜାଣି ସବୁ ଆତ୍ମୀୟତା ଉଭେଇଯାଏ । ହୋଟେଲରେ ଶୁଖୁଆ ମିଳେ ନାହିଁ, କିନ୍ତୁ ଶୁଖିଲା ମାଂସ ମିଳେ । ଓଡ଼ିଶାରେ ଗହମ ହୁଏ ନାହିଁ, ତଥାପି ଲୋକେ ରୁଟି ଖାଆନ୍ତି । ଓଡ଼ିଶାରେ ପ୍ରଚୁର ଧାନଚାଷ ହୁଏ, ତଥାପି ଚାଉଳ ମିଳେନା । ଓଡ଼ିଶାର ସମୁଦ୍ର ନଦୀରେ ପ୍ରଚୁର ଜୀଅନ୍ତା ମାଛ ଧରାଯାଏ, ତଥାପି ଲୋକେ ଶୁଖୁଆ ଖାଆନ୍ତି । ପାଖଘରେ ପିଲାଟା ସେମିତି କାନ୍ଦିଚାଲିଛି । ତା ମା'ର କ୍ଷୀର ଶୁଖିଯାଇଛି ବୋଧହୁଏ । ବନ୍ୟା ହେଲା, ପାଣିର ପ୍ରାଚୁର୍ଯ୍ୟରେ ପୃଥିବୀ ଭାସିଗଲା; କିନ୍ତୁ ମଣିଷର ହୃଦୟ ରସଶୂନ୍ୟ ହୋଇଗଲା । ଢଥି ଶୁଖୁଆ ରାନ୍ଧୁଛି । ଶୁଖୁଆରେ ଖାଦ୍ୟପ୍ରାଣ ନାହିଁ । ମଣିଷ ଦେହରେ ପ୍ରାଣ ଆସିବ କୁଆଡ଼ୁ ? ଏଇ କେତେଦିନ ତଳେ ଢଥି କେତେ ପ୍ରାଣବନ୍ତ ନ ଥିଲା ! ତାର କଥାରେ ପ୍ରାଣ, ତାର ହସରେ ପ୍ରାଣ, ତାର ଚାଲିରେ ପ୍ରାଣ, ତାର ଲୁହରେ ପ୍ରାଣ, ତାର ଚିଠିରେ ପ୍ରାଣ—ସବୁଠାରେ ବେଶ୍ ପ୍ରାଣପ୍ରାଚୁର୍ଯ୍ୟ ଅନୁଭବ କରୁଥିଲି । ଅବଶ୍ୟ ସେତେବେଳେ ବସନ୍ତଋତୁ ଥିଲା । ବଜାରରେ ଚାଉଳ ମିଳୁଥିଲା, ମାଛ ମିଳୁଥିଲା, ପ୍ରଚୁର ମାଛ । ମୁଁ ସେତେବେଳେ ଢଥିଘରେ ସୁନ୍ଦର ଖାଦ୍ୟ ପ୍ରାଣଯୁକ୍ତ ଖାଦ୍ୟ ଖାଉଥିଲି । ଢଥିର ବାପାବୋଉ ମୋତେ ଭଲପାଉଥିଲେ, ବିଶ୍ୱାସ କରୁଥିଲେ । ଢଥି ମୋତେ ସୁନ୍ଦର ସୁନ୍ଦର ଚିଠି ଲେଖୁଥିଲା । ସେ କହୁଥିଲା—ଆମକୁ ନେଇ ଖୁବ୍ ଶୀଘ୍ର ଖୁବ୍ ସୁନ୍ଦର ଗୋଟିଏ ଘର ତିଆରି କରି ନିଜହାତରେ ରାନ୍ଧି ଖୁଆଇବ । ମୁଁ ଏଇ ବାକ୍ୟର ଦୃଶ୍ୟଟିକୁ ଖୁବ୍ ଭିତରେ ଆଙ୍କି ସେତେବେଳେ ବଜାର ଭିତର ଦେଇ ଚାଲିଯାଉଥିଲି ଦେଖୁଥିଲି ଚାଉଳଭର୍ତ୍ତି ବସ୍ତାର ମୁହଁ ଖୋଲି ଦିଆଯାଇଛି । ଚନ୍ଦନ ଟୋପା ଲଗାଇ ହସହସ ମୁହଁରେ ଦୋକାନୀ ତାର ଗରାଖର ଥଳି ଭର୍ତ୍ତି କରିଦେଉଛି ଚାଉଳରେ । ସୁନ୍ଦର ସବୁଜ ଖାଦ୍ୟପ୍ରାଣଯୁକ୍ତ ପରିବା ବୁହାହୋଇ ଚାଲିଯାଉଛି ଅନେକ ପରିବାର ଭିତରକୁ । ମୁଁ ଦେଖୁଥିଲି ଢଥି ମୁଣ୍ଡରେ ସିନ୍ଦୂର ଟୋପା ଲଗାଇ ହସ ହସ ମୁହଁରେ ମୋ ହାତରୁ ବଜାରଥଳି ଧରିନେଇ ଦ୍ରୁତ ରୋଷେଇଘର ଭିତରକୁ ପଶି ଯାଉଛି । କିନ୍ତୁ ଏବେ ବର୍ଷାଋତୁ । ବଜାରରେ ଚାଉଳ ମିଳୁନି ସୋରିଷତେଲ କିରାସିନି ସବୁ ବନ୍ଦ । ମୋ ଭିତରେ ରୋଗଟା କେମିତି ମରଣମୁଖା ହୋଇ ବଢ଼ିଉଠୁଛି । ଢଥିବୋଉ ଢଥିର ମୋ ସହ କଥାକହିବାର କଟକଣା ଜାରି କରିଦେଇଛନ୍ତି । ମୁଁ ଦେଖୁଛି ଢଥିର ନୂଆଶାଢ଼ୀ ପବନରେ ହଲୁଛି । ଝର୍କାପାଖରେ ପଡ଼ିଥିବା ଖବରକାଗଜ ପୃଷ୍ଠା ଫଡ଼ ଫଡ଼ ହୋଇ ଉଡ଼ୁଛି । ବନ୍ୟା; ଓଡ଼ିଶାର ନଦୀମାନଙ୍କରେ ପ୍ରବଳ ବନ୍ୟା । ପ୍ରତିବର୍ଷ ଅବଶ୍ୟ ବନ୍ୟା ଆସେ ।

ମୋର ଢଥିର ଏକତା
ବସନ୍ତକାଳ ଓ
ଅମର ସ୍ୱପ୍ନ ।

ଅତିଥି ଭଳି କେତେଦିନ ରହେ, ପୁଣି ବିନମ୍ର ହୋଇ ଫେରିଯାଏ । କିନ୍ତୁ ଏଥର ଥରେ ନୁହେଁ, ତିନି ତିନି ଥର ଆସିଲା । ଆକ୍ରମଣକାରୀ ଭଳି ଅସ୍ତ୍ରନେଇ ଆସି ବହୁତ ଅତ୍ୟାଚାର କରିଗଲା । ମୁଁ କେବଳ ସହରରେ ରହି ଖବରକାଗଜ ଉପରେ ବନ୍ୟାର ଟ୍ୟାଙ୍କମୂର୍ତ୍ତି ଦେଖିଲି । ସହରତଳିର ଯେଉଁ ଅଂଶ ପାଣିରେ ବୁଡିଯାଏ, ସେଇ ଅଂଶକୁ ଯାଇ ନଈବଢ଼ିର ଦୃଶ୍ୟ ଦେଖିବା ଆଗରୁ ଦେଖିଲି ସେ ଦୃଶ୍ୟ ଉପଭୋଗ କରିବା ପାଇଁ ଅନେକ ଲୋକର ଭିଡ଼ । ଅନେକ ଚେନାଚୂର, ବାରମଜା, ଦୋକାନ । ସମସ୍ତଙ୍କ ମୁହଁରେ କେମିତି ଏକପ୍ରକାର ଉଲ୍ଲାସ । ଲୁଙ୍ଗିପିନ୍ଧା ଝିଅ ବେଲବଟ୍ସ ପିନ୍ଧା କଲେଜ ପିଲାରେ ସ୍ଥାନଟା ମେଳା ଭଳି ମନେହେଲା । ମୁଁ କେମିତି ବୁଝିପାରିଲି ବଢ଼ି ଦେଖିବା ଅପେକ୍ଷା ଲୋକମାନେ ଆଉ କିଛି ଦେଖିବାକୁ ଓ ଦେଖାଇବାକୁ ଆସିଛନ୍ତି । ଗାଁର ଦୃଶ୍ୟ ମନେ କରି ମୋ ଭିତରେ ଆତଙ୍କ, ତା ଭିତରେ ବି ମୋର ଆଖି ପହଁରି ଆସୁଥିଲା ରଙ୍ଗୀନ ଶାଢ଼ୀ, ଜିନ୍ସ ଲୁଙ୍ଗିପିନ୍ଧା ଝିଅଙ୍କ ଉପରେ । ହଠାତ୍ ଗୋଟିଏ ରଙ୍ଗୀନ ଶାଢ଼ୀ ଉପରେ ମୋର ଦୃଷ୍ଟି ସ୍ଥିର ହୋଇଗଲା । ତଥି । ତା ବୋଉ ସହ । ବଢ଼ି ଦେଖିବା ପାଇଁ । ମୁଁ ଅନେକ ଝିଅଙ୍କୁ ପାରି ହୋଇ ତା ପାଖକୁ ଆଗେଇଗଲି । ସେମାନଙ୍କ ପାଖେ ପାଖେ ବୁଲିଲି । ସ୍ରୋତର ଗତି ବେଗ କେତେ, କେତେ ଘର ଭାସିଯାଉଛି ସବୁ କଥା, କହିଗଲି । ତଥି ପାଖରେ ଅନେକ କଥାର ସୁଅ ବହିଗଲା । ତଥି ପଦେ ବି ମୋ ସହ କଥା ହେଲା ନାହିଁ । ତଥି ମୋତେ ସୁନ୍ଦର ଭାବେ ଉପେକ୍ଷା କରିଗଲା । ଚମତ୍କାର ଭାବେ ତାର ସୁନ୍ଦର ଗୋଇଠି ଉପରୁ ରଂଗୀନ ଶାଢ଼ୀ ଟେକି ପାଣିରେ ପାଦ ଦେଲା । ମୁଁ ଉପେକ୍ଷିତ: କାରଣ ଓଡ଼ିଶାର ନଦୀରେ ବନ୍ୟା । ବଜାରରେ ମାଛ, ଚାଉଳ ସୋରିଷତେଲ, ଅମୂଲ କିଛି ମିଳୁନି । ପାଖଘରୁ ପିଲାଟା କାନ୍ଦ ବୁଲୁଛି । ରୋଷେଇଘରୁ କେବଳ ତଥିର କାଚଚୁଡ଼ିର ଶବ୍ଦ ଆସୁଛି । ତଥିର ବାହାଘର କଥା ଶୁଣିଲେ ମୁଁ ଖୁସି ହୋଇଯାଏ, କାରଣ ମୋର ସ୍ୱପ୍ନ, ତଥି କିଛିଦିନପରେ ମୋ ପାଇଁ ରାନ୍ଧିବ । ମୁହଁର ଝାଳ ପୋଛି ଭାତହାଣ୍ଡି ଚୁଲିରୁ ଓହ୍ଲାଇ ଆଣିବ । କାର୍ଯ୍ୟବ୍ୟସ୍ତତାରେ ଲୁଗାପଟା ଅସଜଡ଼ା ହୋଇଯିବ । ମୁଁ ଅଲକ୍ଷ୍ୟରେ ଥାଇ ମୁରୁକି ହସିବି; ତାର ହାତରନ୍ଧା ଖାଇ ଲମ୍ବା ଲମ୍ବା ହାକୁଟିମାରି ଅଫିସ ଯିବି । ତଥି ସଂଜ ପର୍ଯ୍ୟନ୍ତ ମୋତେ ଅପେକ୍ଷା କରି ସେଇ ନିଃସଙ୍ଗ ଭଡ଼ାଘରେ ବସି ରହିବ । ମୋ ଆକରେ ଥିବା ସବୁ ପୁରୁଣା ପତ୍ରିକା ଓଲଟାଇବ । ବାକ୍ସ ଖୋଲି ମୋର ପୁରୁଣା ଡାଇରୀ ପଢ଼ିବ । କଲେଜରେ ପଢ଼ୁଥିଲା ବେଳେ ଗୋଟିଏ ଝିଅ ମୋତେ ଯେ ପ୍ରେମ କରୁଥିଲା

**ନଈବଢ଼ିର ଦୃଶ୍ୟ ଓ ତଥି ।**

**ମୋର ଭବିଷ୍ୟତ ସ୍ୱପ୍ନ ଓ ବାସ୍ତବତା**

ଏବଂ ନିୟମିତ ପ୍ରେମପତ୍ର ଲେଖୁଥିଲି, ଦ୍ୱିପ୍ରହର ବେଳେ ନିଦୁଆ ଆଖିରେ ସେଇ ପ୍ରେମପତ୍ର ଖୋଲି ପଢିବ । କିଛି ନହେଲେ ଘର ସଜାଡ଼ିବ । କିନ୍ତୁ ମୋର ଏ ସବୁ ସ୍ୱପ୍ନ କେବଳ ସ୍ୱପ୍ନ ମୁଁ ଜାଣେ; କାରଣ ବଜାରରେ ଚାଉଳ ନାହିଁ, ମାଛ ନାହିଁ, ସୋରିଷ ତେଲ ନାହିଁ । ଠିଆବୋଉ ଠିଆକୁ ବୁଝାଇ ଦେଇଛନ୍ତି ଯେ ସେ ଘରର ବଡ ଝିଅ । ତା ଉପରେ ଅନେକ ଲୋକର ଭରସା ଅଛି । ତାକୁ ତାର ବନ୍ଧୁବାନ୍ଧବଙ୍କ ମର୍ଜି ଉପରେ ବାହା ହୁଆଯିବ । ତେଣୁ ମୋ ଭଳି ଲୋକ ସହ ବିବାହ ତ ଅସମ୍ଭବ, କଥା କହିବା ବି ପାପ । ପାଖଘରେ ପିଲାଟା କାନ୍ଦି ଚାଲିଛି । ଖାଦ୍ୟପ୍ରାଣ ହୀନ ଖାଦ୍ୟ ଖାଇ ତା ବୋଉର ସ୍ତନରୁ କ୍ଷୀର ଶୁଖିଗଲାଣି । ଠିଆ ବୋଉର ସ୍ତନରେ ସ୍ନେହର କ୍ଷୀର ବା ଝରିବ କେମିତି ? କାରଣ ବନ୍ୟା ଚାଲିଯାଇଛି, ମଣିଷକୁ ରସଶୂନ୍ୟ କରି ଦେଇ ଯାଇଛି । ବଢି ଛାଡିବା ପରେ ଗାଁକୁ ଯାଇଥିଲି । ଆଣ୍ଠୁଯାଏ ପଙ୍କ ଜମିଯାଇଥିବା ଧାନ ବିଲ ଭିତରେ ପଶି, ନଳତାବଣ ଭିତର ଦେଇ ନଈସୁଅକୁ ଶ୍ରେଷ୍ଠ ଏକ ଡଙ୍ଗାରେ ପାରି ହୋଇ ଗାଁରେ ଯାଇ ଦେଖିଲି ପଛପଟ କାନ୍ଥ ପଡିଯାଇଛି ପୋଷାହାତୀ ପିଠିରେ ମାହୁନ୍ତ ଚଢିଲା ବେଳେ ହାତୀ ପଛଗୋଡ ଭାଙ୍ଗି ଠିଆହେଲେ ଯେମିତି ଦେଖାଯିବ । ଦୂରରୁ ଚାଳଟା ସେମିତି ଦେଖାଯାଉଛି । କାନ୍ଥ ପଡିଯିବା ଭୟରେ ମା ଭାଇ ଭଉଣୀ ପାଖ

ବଢ଼ିପରେ ଗାଁ
ଓ
ନୂଆଲୁଗା ।

ପକ୍କାଘରେ ଆଶ୍ରୟ ନେଇଛନ୍ତି । ଅବସ୍ଥା ଏତେ ଖରାପ ହେବ ବୋଲି ଭାବି ନ ଥିଲି । ବନ୍ୟା ଆସିବା ପୂର୍ବରୁ ଭାଇ ଭଉଣୀଙ୍କ ଚିଠି ପାଇଥିଲି ନୂଆଲୁଗା ନେଇଯିବା ପାଇଁ । ମୋ ହାତରେ ବେଗ୍ । ବେଗ୍‌ରେ ରଙ୍ଗୀନ ଶାଢୀ, ବ୍ଲାଉଜ ପେଣ୍ଟ ସାର୍ଟ; ମା'ଙ୍କ ପାଇଁ ଧୋତି ଆଉ ଚଦର । ମୁଁ ଦେଖିଲି, କେହି ହତାଶ ହେଲେ ନାହିଁ । ବରଂ ବେଶୀ ଖୁସି ହେଲେ । ଭାଇଭଉଣୀ ନୂଆ ଲୁଗା ପିନ୍ଧିଲେ । କାଦୁଅ ଚକଟି ଚକଟି ଅଙ୍ଗ ଗାଁର ମାଇପିମାନେ ପସନ୍ଦର ମେଳା ବସାଇଦେଲେ । ମୁଁ ପରିଷ୍କାର ବୁଝି ପାରିଲି ଜଳଖିଆ ଦୋକାନ, ଚାଉଳଡାଲି ଦୋକାନ ଉଠିଯାଇ କାହିଁକି ସେଇ ସବୁ ଯାଗାରେ ଲୁଗାଦୋକାନ ଓ କସମେଟିକସ୍ ଦୋକାନ ଗଢି ଉଠୁଛି । ଠିଆର ପୋଷେଇ ଘରୁ ଶୁଖୁଆର ବାସ୍ନା ଆସୁଛି । ଠିଆର ନୂଆଶାଢୀ ଝଲୁଛି । ପିଲାଟା ପାଖଘରୁ ସେମିତି କାନ୍ଦିଚାଲିଛି । ମୁଁ ବି ଠିଆ ପାଇଁ ଅନେକ ନୀରବରେ କାନ୍ଦିଛି । ତା ପାଇଁ ସ୍ୱପ୍ନ ଥିଲା ଗୋଟିଏ ସୁନ୍ଦର ଘର ତିଆରି କରିବି । ସହର ତଳର ଯେଉଁ ଅଂଶରୁ ସହରର ନିଅନ୍ ଆଲୁଅ ଦେଖାଯାଏ, ପୁଣି ଛ'ଘଡି ରାତିରେ ବିଲୁଆ ହୁକେ-ହୋ କରେ ଏବଂ ଯେଉଁ

ଠିଆ ଓ ବାସଗୃହ
ପାଇଁ

ଜାଗାକୁ କେବେ ବଢିପାଣି ନ ଆସେ, ସେମିତି ଏକ ଜାଗାରେ ଶ୍ରେଷ୍ଠ ଗୋଟିଏ ଘର ତିଆରି କରିବି । ସାମ୍ନା ବଗିଚାରେ ସୁନ୍ଦର ସୁନ୍ଦର ଫୁଲଗଛ ଲଗାଇଦେବି । ଘର

**ସ୍ୱପ୍ନ**

ପଛ ପଟରେ ଲଗାଇ ଦେବି ବାଇଗଣ, ଜହ୍ନି, ଭେଣ୍ଡି । ବାରିପଟେ ପୋଖରୀ ଖୋଳିଦେବି । ପୋଖରୀରେ ଛାଡ଼ିଦେବି ମାଛଜାଆଁଳ । ପୋଖରୀହୁଡ଼ାରେ ନଡ଼ିଆ-ଗୁଆ-କଦଳୀ । ତଥି ସଂଗରେ ଫୁଲ ବଗିଚାରେ ବୁଲିବ, ରୋଷେଇଘରୁ ବାହାରି ତୋଳି ଆଣିବ ବାଇଗଣ-ଭେଣ୍ଡି-ଜହ୍ନି; କିନ୍ତୁ ଓଡ଼ିଶାର ନଦୀରେ ପ୍ରବଳ ବନ୍ୟା ଆସିଲା । ମୋର ସ୍ୱପ୍ନ ସବୁ ହାତ ଗୋଡ଼ ଛାଟିପିଟି ହୋଇ ଭାସି ଗଲେ । ତଥି ତା'ବୋଉର ଗେଲ୍ହା ଝିଅ ବନିଗଲା । ତାର ନୂଆଶାଢ଼ୀକୁ ସମ୍ଭାଳି ବର୍ଷାପାଣିରେ ଖେଳିଲା । ସେ ଭୁଲିଗଲା ଯେ ସେ ତା ବାପାବୋଉଙ୍କ ବଡ଼ଝିଅ । ତା ଉପରେ ଅନେକଙ୍କ ଆଶା ଭରସା । ମୋର ଚିତ୍କାର ଶବ୍ଦ ତେଣୁ ତା କାନରେ ପଡ଼ିପାରୁ ନାହିଁ । ମୁଁ ଶୁଣୁଛି ପାଖଘରେ ପିଲାଟା ଚିତ୍କାର କରି ଚାଲିଛି । ବଜାରକୁ ଅମୂଲ ଆସିଲା ପର୍ଯ୍ୟନ୍ତ, ଖାଦ୍ୟପ୍ରାଣମୁକ୍ତ ଖାଦ୍ୟ ଖାଇ ତା ବୋଉର ଛାତିରେ କ୍ଷୀରର ବନ୍ୟା ଆସିଲା ପର୍ଯ୍ୟନ୍ତ ତାକୁ ଚିତ୍କାର କରିଯିବାକୁ ପଡ଼ିବ । ପ୍ରତିବର୍ଷର ବର୍ଷାପାଇଁ ମୋତେ ବି ପ୍ରସ୍ତୁତ ହେବାକୁ ପଡ଼ିବ ।

**ଅନିବାର୍ଯ୍ୟ ଭବିଷ୍ୟତ ଚିନ୍ତା ।**

ଗାଁରେ ଭାଇଭଉଣୀଙ୍କୁ ଖାଦ୍ୟ ଦେଇ ନ ପାରି ନୂଆଲୁଗା ଦେଇ ଭୁଲାଇ ଦେବାକୁ ପଡ଼ିବ । ବଜାରରେ ମାଛ ନ ମିଳିଲେ ଶୁଖୁଆରେ ଚଳାଇ ନେବାକୁ ହେବ । ହୋଟେଲରେ ଡାଲି ଅଉ ବୋଇତାଳୁ ତରକାରି ଖାଇ ଲମ୍ବା ବଢ଼େଇ ଖାତାରେ ମୂଲ୍ୟ ଦେଖିବାକୁ ପଡ଼ିବ । ଗୋଟିଏ ଚକ୍ ଚକ୍ ଟେରେଲିନ୍ ସାର୍ଟରେ ଅନେକ ଦିନ ଚଳେଇନେବାକୁ ପଡ଼ିବ ଏବଂ ଲୋକଙ୍କ ମନରେ ବଡ଼ ଘରକଣିର ଭ୍ରମ ସୃଷ୍ଟି କରିବାକୁ ପଡ଼ିବ । ଭିତରର ରୋଗଟାକୁ ଠିକିଏ ଶସ୍ତା ଔଷଧ ଆବିଷ୍କାର ହେଲା ପର୍ଯ୍ୟନ୍ତ ଚପେଇ ଦେବାକୁ ହେବ । ତଥିର ଭଲପାଇବାକୁ ସମ୍ବଳ କରି ସାରାଜୀବନ ନିଃସଂଗ ରହି ବଜାର ଦର ସହ ଲଢ଼ି ଯିବାକୁ ପଡ଼ିବ । ମୁଁ ଜାଣେ ତଥି ଭିତରେ ମୋ ପାଇଁ ଅନେକ ଈପ୍ସିତ ଗୋପନ କଥା ଭର୍ତ୍ତି ହୋଇ ରହିଛି । ଦିନେ ମୁଁ ସେଇ ଗୋପନ କଥା ତାରି ଗନ୍ତାଘରୁ ଜବତ୍ କରିବି । ଯେଉଁଦିନ ଅନ୍ୟପ୍ରଦେଶକୁ ଚୋରାଚାଲାଣ ହେଉଥିବା ଚାଉଳ ଓ ମାଛ ଜବତ ହୋଇପାରିବ ଏବଂ ମାଲଗୋଦାମର ଅନ୍ଧକାର କୋଠରୀରୁ ଅନେକ ସୋରିଷତେଲ ଟିଣ ଓ ଅମୂଲ ଡବା ଉଦ୍ଧାର କରାଯାଇପାରିବ । କିନ୍ତୁ ପିଲାଟା ସେମିତି କାନ୍ଦି ଚାଲିଛି । ମୋର ବି ଭୀଷଣ କାନ୍ଦିବାକୁ ଇଚ୍ଛା ହେଉଛି । ମୁଁ ଅନୁଭବ କରୁଛି ଲୁହଲୁଡ଼ା ଆଖି ବାଟେ ନ ବାହାରି ମୋର ପ୍ରତି ଲୋମକୂପ ପାଖକୁ ମାଡ଼ି ଯାଇଛନ୍ତି । ମୋ ଦେହ ଅବଶ ହୋଇ ଆସୁଛି । ମୋ ଦେହଟା କେମିତି ପଚିଆସୁଛି । ମୋର ଶବ କେଉଁ ଏକ ଶ୍ମଶାନରେ ଯେପରି ଜଳିଯାଉଛି । ମୋ ଭିତରୁ ଏକ ଶ୍ରେଷ୍ଠ ସୁନ୍ଦର ମୂର୍ତ୍ତି ବାହାରି ଆକାଶରେ ଉଡ଼ିବୁଲୁଛି । କ୍ରମେ ସେ ମୂର୍ତ୍ତି ଓହ୍ଲାଇ ଆସୁଛି ଭୂଇଁ ଉପରକୁ । ଝଟଟା ଦୋକାନରେ ବିକ୍ରିତ ହୋଇଯାଉଛି ।

ମୁଁ ଏକ ସାନ ଛୁଆ ଭଳି ସେଇ ଦୋକାନରେ ହାତଗୋଡ଼

ଏକ ସୁସମୟରେ ପୁନର୍ଜନ୍ମ ପାଇଁ ସ୍ୱପ୍ନ ।

ଛୁଟି କାଢ଼ିବା ଆରମ୍ଭ କରି ଦେଇଛୁ । ତଥି ସେପେଇଘରୁ ତରକାରି ରନ୍ଧା ଛୁରୀ ମୋ ପାଖକୁ ଧାଇଁ ଆସୁଛି । ମୋତେ ତା ଛାତିକୁ ଉଠାଇନେଇ ନୂଆ ସଜାଡ଼ି ଚମତ୍କାର ଭାବେ ବସିପଡ଼ୁଛି ଏବଂ ତା କୋଳରେ ମୋତେ ଶୁଆଇଦେଇ ବ୍ଲାଉଜର ତଳ ବୋତାମ ଖୋଲାଇଦେଉଛି । ସେ ମୋ ମୁହଁରେ ତାର ସ୍ତନାଗ୍ର ଭର୍ତ୍ତି କରି ପରମ ତୃପ୍ତିରେ ମୋତେ ତା ଛାତିରେ ଜାକି ଧରୁଛି । ମୁଁ ସେତେବେଳେ ତଥିର ଛାତିରେ କ୍ଷୀରର ବନ୍ୟାରେ ଅଣନାଃଶ୍ୱାସୀ ହୋଇଉଠି ମନେକରୁଛି—ଓଡ଼ିଶାର ସବୁ ନଦୀର ଉପର ମୁଣ୍ଡରେ ବନ୍ଧ ହୋଇଯାଇଛି । ଧଳାଚନ୍ଦନ ଟୋପା ପିନ୍ଧି ଗୁହାଳଦୋକାନୀ ଲଗାଟର ଥଳି ଗୁହାଳରେ ଭର୍ତ୍ତି କରି ଦେଉଛି । ଖାଦ୍ୟପ୍ରାଣଯୁକ୍ତ ପରିବା ବୃହାହୋଇ ଯାଉଛି ସବୁ ପରିବାର ଭିତରକୁ । ସୋରିଷତେଲ ଓ ଅମୂଲଡବାରେ ଭର୍ତ୍ତି ହୋଇ ଯାଉଛି ଘରର ଥାକ ସବୁ ଏବଂ ଅନେକ କୁମାରୀ ତଥି ସେମାନଙ୍କ ପ୍ରାର୍ଥୀତ ପୁରୁଷକୁ ବାହାହେବେ ବୋଲି ରଙ୍ଗୀନ ପର୍ଦ୍ଦା ପାଖରେ ବସି ପ୍ରତିଶ୍ରୁତି ଦେଉଛନ୍ତି ଏବଂ ସୁନ୍ଦର ସୁନ୍ଦର ଚିଠି ଲେଖୁଛନ୍ତି । କେମିତି ଏକପ୍ରକାର ସ୍ୱରର ଝଙ୍କାରରେ ମୋର ଆଖିପତା ନଇଁ ଆସୁଛି ।



## ବିଶେଷ ସମ୍ବାଦ

ମୁଁ ଶୋଇ ଶୋଇ ଖବର କାଗଜ ପଢ଼ୁଛି ।

ପ୍ରଶାନ୍ତ ଶୋଇଯାଇଛି ।

ମଶାମାନେ ମୋ କାନ ପାଖରେ ବିରକ୍ତିକର ଶବ୍ଦ କରୁଛନ୍ତି ।

କୋରାପୁଟ ଜିଲ୍ଲାରେ ସମସ୍ତ ବସ୍ ଅଚଳ ନିଜ ପ୍ରତିନିଧିଙ୍କ ଠାରୁ ଜୟପୁର ୧୦।୫ ଧର୍ମଘଟ ଫଳରେ କୋରାପୁଟ ଜୋନ ରେ ଯାତାୟତ କରୁଥିବା ସମସ୍ତ ବସ୍ ଗତ କାଲିଠାରୁ ଅଚଳ ହୋଇ ପଡ଼ିଛନ୍ତି ଏଠାରୁ କୌଣସି ବସ୍ ଛାଡ଼ି ନାହିଁ କିମ୍ବା ଯେଉଁ ବସ୍‌ଗୁଡ଼ିକ ଅନ୍ୟନ୍ତ ଯାଇ ସ୍ଥାନରେ ଅଟକିଥିଲା ସେଗୁଡ଼ିକ ଗ୍ୟାରେଜକୁ ଫେରି ଆସିଛନ୍ତି ଧର୍ମଘଟ ଯୋଗୁଁ

ସାଧାରଣ ଯାତ୍ରୀ ବିଶେଷ ଅସୁବିଧାର ସମ୍ମୁଖୀନ ହୋଇଛନ୍ତି ବିଶେଷତଃ ବିହାର ପଥ ଭିତରେ ଧର୍ମଘଟ ହେଉଥିବାରୁ ବହୁ ବରଯାତ୍ରୀଦଳ ପ୍ରାୟ ପ୍ରତି ଗ୍ରାମରେ ଅଟକି ରହିଛନ୍ତି

ମୁଁ ଯେତେବେଳେ ପ୍ରଶାନ୍ତକୁ ବାହାହେଲି ସେତେବେଳେ ଏ ଧରଣର ଧର୍ମଘଟ ସବୁ ଏତେ ନଥିଲା। ମୁଁ ଦଳେ ବରଯାତ୍ରୀ ସହ ଗୋଟିଏ ଦ୍ରୁତଗାମୀ ବସ୍‌ରେ ଯେତେବେଳେ ପ୍ରଶାନ୍ତର ସହରରେ ଓହ୍ଲାଇଲି ମନେହେଲା ଏଠାରେ ସମସ୍ତେ ଯେପରି ପ୍ରଶାନ୍ତପରି ସୁନ୍ଦର ସରଳ ଓ ଶାନ୍ତ। ସମସ୍ତଙ୍କ ଘର ସାମ୍ନାରେ ଚମତ୍କାର ଫୁଲ ବଗିଚା। ସମସ୍ତଙ୍କ ଘରେ ଧାନ ଚାଉଳ ଲୁଗାପଟା ଭର୍ତ୍ତି। ବେଦୀରେ ପ୍ରଶାନ୍ତ ପାଖରେ ବସି ମନ୍ତ୍ର ଉଚ୍ଚାରଣ କରୁଥିବାବେଳେ ଗୋଟିଏ ପାଖରେ ସବୁ ସୁନ୍ଦରୀ ତରୁଣୀଙ୍କ ଶାଢ଼ୀର ଫୁଲ ଦେଖି ଗୋଟିଏ ମୁହୂର୍ତ୍ତପାଇଁ ମୋର ଇଚ୍ଛା ହୋଇଥିଲା ଶାଢ଼ୀର ଫୁଲ ସବୁ ତୋଳି ଆଣି ସେଥିରେ ହାର ତିଆରି କରି ସମସ୍ତଙ୍କ ବେକରେ ପକାଇ ଦେବି। ଯାହାହେଉ ପ୍ରଶାନ୍ତ ମୋର ଫୁଲ ହାର ପିନ୍ଧି ଘରକୁ ଆସିଲା। ଘର ଆଗରେ ତିଆରି ହେଲା ଫୁଲ ବଗିଚା ଧାନଚାଉଳ, ରଙ୍ଗୀନ ଫୁଲପକା ଲୁଗାପଟାରେ ଘର ଭର୍ତ୍ତି ହେଲା। ଗୋଟିଏ ବର୍ଷର ସୁନ୍ଦର ଫୁଲ ବଗିଚା ପାରହେଲା ପରେ ପ୍ରଶାନ୍ତର କୋଳ ଭର୍ତ୍ତି କରି ଆସିଲା ଆନନ୍ଦ। ସେତେବେଳେ ପ୍ରଶାନ୍ତ ଅନେକ ରାତି ପର୍ଯ୍ୟନ୍ତ ଶୋଇ ଶୋଇ ଏଣୁତେଣୁ ଗପୁଥିଲା ଆଉ ଲୁଗା କାନି ବାନ୍ଧି ଆନନ୍ଦ ଦେହରୁ ମଝିରେ ମଝିରେ ମଶା ଘଉଡ଼ାଇ ଦେଉଥିଲା। ଏବେ ଆଉ ସେଦିନ ନାହିଁ। ପ୍ରଶାନ୍ତ ଶୋଇଯାଇଛି।

ରାଣୀଗଞ୍ଜ ନିକଟରେ ଗୋଟିଏ ମାଲଗାଡ଼ି ଲାଇନଚ୍ୟୁତ ୧୦।୫ ରେଳକର୍ମଚାରୀମାନଙ୍କ ଧର୍ମଘଟର ଦ୍ୱିତୀୟ ଦିବସରେ ବିକ୍ଷୋଭକାରୀମାନେ ରାଣୀଗଞ୍ଜ ଠାରୁ ଦୁଇମାଇଲ ଦୂରରେ ରେଳ ଲାଇନର ଫିସ୍‌ପ୍ଲେଟ କାଢ଼ି ନେଇଥିଲେ ରାଣୀଗଞ୍ଜ କୋଇଲା ଖଣିରୁ କୋଇଲା ଆଣୁଥିବା ମାଲଗାଡ଼ିର ଦୁଇଟି ଡବା ତଳକୁ ଖସି ଯାଇଥିଲା ବର୍ତ୍ତମାନ ପୂର୍ବ ରେଳପଥର ବଡ଼ ବଡ଼ ଷ୍ଟେସନମାନଙ୍କରେ ବିକ୍ଷୋଭକାରୀମାନଙ୍କୁ ଘଉଡ଼ାଇବା ପାଇଁ ପୋଲିସ ମୁତୟନ କରାଯାଇଛି ଏବଂ ଅବସ୍ଥା ଆୟତ୍ତାଧୀନ ରହିଛି

ମୋର ସବୁବେଳେ ରେଳଯାତ୍ରାର ନିଶାଥିଲା। ପ୍ରଶାନ୍ତକୁ ବାହାହେବା ଆଗରୁ ମୁଁ ସମୟ ପାଇଲେ ଅନିର୍ଦ୍ଦିଷ୍ଟ ରାତିର ପାସେଞ୍ଜର ଟ୍ରେନରେ ଘୂରି ବୁଲୁଥିଲି। ବିଭିନ୍ନ ଅଞ୍ଚଳର ଲୋକଙ୍କୁ ଦେଖିବା ନୂଆ ନୂଆ ସ୍ଥାନରେ ପାଦ ଦେବା ଥିଲା ମୋର ନିଶା। ଆନନ୍ଦର ଜନ୍ମ ପରେ ହଠାତ୍ ସେଇ ନିଶା ଭିତରେ ଚେଇଁ ଉଠିଲା। ଦିନେ ପ୍ରଶାନ୍ତ ଓ ଆନନ୍ଦକୁ ନେଇ

ଟ୍ରେନରେ ଚଢ଼ିଗଲୁ । ସୁନ୍ଦରଗଡ଼ରେ ଜଣେ ସଂପର୍କୀୟ ଭାଇ ରହୁଥିଲେ । ଲକ୍ଷ୍ୟ ତାଙ୍କଠାରେ କିଛିଦିନ ବିତାଇ ଫେରି ଆସିବା । ରାତିର ଅନ୍ଧକାରରେ ଟ୍ରେନ ଝିକ୍ ଝିକ୍ ଶବ୍ଦ କରି ଆଗେଇ ଯାଉଥାଏ । ଷ୍ଟେସନ ପରେ ଷ୍ଟେସନ ପାରି ହୋଇ ଯାଉଥିବାରୁ ମୁଁ ଲକ୍ଷ୍ୟ କରେ । ଝର୍କା ପାଖରେ ମୁଁ । ଆନନ୍ଦ ମୋ ଆଡ଼େ ମୁଣ୍ଡ କରି ପ୍ରଶାନ୍ତର କୋଳରେ ତାର ବଳିଲା ବଳିଲା ପାଦ ଦୁଇଟି ଟେକି ଆରାମରେ ଶୋଇ ଯାଇଥାଏ । ପ୍ରଶାନ୍ତ ଢୁଳାଉଥାଏ । ମୁଁ ତା ଆଡ଼େ ଜିରାଫ ଭଳି ମୁହଁ ବଢ଼ାଇ ମନେ ମନେ ଚୁମା ଖାଉଥାଏ । ହଠାତ୍ ଟ୍ରେନଟା ଯେମିତି ଖୁବ୍ ସ୍ପିଡ଼ ନେଲା ବୋଲି ମୋତେ ମନେହେଲା । ଝଙ୍କାଂ ଝଙ୍କାଂ ଶବ୍ଦଟା ଦ୍ରୁତତର ହୋଇ ଉଠିଲା । କିନ୍ତୁ ହଠାତ୍ ଦପ୍ କରି ସବୁ ଆଲୁଅ ଲିଭିଗଲା । ସବୁ ଯେପରି ଓଲଟ ପାଲଟ ହୋଇଗଲା । ମୁଁ ହଠାତ୍ କିଛି ବୁଝି ପାରିଲି ନାହିଁ । ନିଜକୁ ଠିକ୍ ଭାବେ ଯେତେବେଳେ ଅନୁଭବ କଲି ବୁଝି ପାରିଲି ଟ୍ରେନଟା ଲାଇନଚ୍ୟୁତ ହୋଇ ଯାଇଛି । ମୁଁ ଅଣ୍ଡାଳି ଅଣ୍ଡାଳି ଅନେକ କଷ୍ଟସୃଷ୍ଟ କେଣ କେଉଁ ଅତିକ୍ରମ କରି ପ୍ରଶାନ୍ତର ପାଦଟା ଏବଂ କ୍ରମେ ଭଙ୍ଗାରୁଜା ଭିତରୁ ସଂପୂର୍ଣ୍ଣ ପ୍ରଶାନ୍ତକୁ ଖୋଜି ପାଇଲି । ଅବଶ୍ୟ ଦୁଇସପ୍ତାହ ପରେ ପ୍ରଶାନ୍ତ ଓ ମୁଁ ଡାକ୍ତରଖାନାରୁ ଘରକୁ ଫେରିଲୁ । ପ୍ରଶାନ୍ତ କେମିତି ଖୁବ୍ ଏକା ହୋଇଗଲା । ସେଦିନରୁ ତାର ଅସମ୍ଭବ ନିଦ । ବହୁତ ସମୟ ଶୋଇ ଶୋଇ କଟାଏ । ମନେହୁଏ ସେ ଯେପରି ଆନନ୍ଦକୁ ସ୍ୱପ୍ନ ଦେଖିଛି । ଏବେ ସେ ଶୋଇ ଯାଇଛି ।

ଚାଉଳଦର କମାଇ ଦିଆଯାଉ ବରଗଡ଼ ୧୦।୫ ଶ୍ରୀ ଶୁରେନ୍ଦ୍ର ମୁଣ୍ଡ ଜଣାଇଛନ୍ତି ଯେ ବର୍ଷ ଆରମ୍ଭରୁ ସରକାର ଚାଉଳ ଦର ବଢ଼ାଇ ଦେଇଥିବାରୁ ଦେଶର ଚାରିଆଡ଼େ କିଣିଖିଆ ଲୋକଙ୍କ ମଧ୍ୟରେ ଭୀଷଣ ଅସନ୍ତୋଷ ପ୍ରକାଶ ପାଇଛି ନୂତନ ଧାନ ଫସଲ ଆଦାୟ ପର୍ଯ୍ୟନ୍ତ ଲୋକେ କିପରି ଚଳିବେ ତାହା ସବୁ ସ୍ଥାନରେ ଆଲୋଚନା କରାଯାଉଛି ଏଥିରେ ପ୍ରତିକାର ସକାଶେ ଜନସାଧାରଣଙ୍କ ମଧ୍ୟରେ ପ୍ରତିବାଦ ସଭା ହୋଇ ବିକ୍ଷୋଭ କରାଯାଉଛି ଏହି ଅବସ୍ଥାକୁ ବଢ଼ାଇ ଦେବା ବର୍ତ୍ତମାନ ସରକାରଙ୍କ ପକ୍ଷେ ଉଚିତ ନୁହେଁ ଏପରି ଅବସ୍ଥାରେ ଧାନ ଚାଉଳଦର ବଢ଼ାଇଦେଇ କୃଷକଙ୍କ ମଙ୍ଗଳ କରିବା କହିବା ଠିକ୍ ବୋଲି ଧରାଯାଉ ନାହିଁ ସରକାର ଏଥିର ପୁନର୍ବିଚାର କରି ଅତିଶୀଘ୍ର ଚାଉଳଦର କମାଇ ଦେଇ ଲୋକଙ୍କ ମଙ୍ଗଳ କରନ୍ତୁ ।

ସବୁ ଠିକ୍ ଚାଲିଥିଲା । ହଠାତ୍ ତାପରେ ଧୀରେ ଧୀରେ ଧାନ ଚାଉଳ ଦର ହୁ ହୁ ବଢ଼ିଗଲା । କ୍ରମେ କ୍ରମେ ମୁଁ ଅନୁଭବ କଲି ପ୍ରଶାନ୍ତ ଦୁର୍ବଳ ହୋଇ ଉଠୁଛି । ଖାଦ୍ୟ ଖାଦ୍ୟ-ସାରହୀନ ହୋଇଗଲା ପରି ପ୍ରଶାନ୍ତର ଅସ୍ଥି ମଜ୍ଜା ଶୂନ୍ୟ ହୋଇ ଉଠୁଛି । ମୁଁ ଦେଖେ ପ୍ରଶାନ୍ତ ଝାଳ ସରସର ହୋଇ ରୋଷେଇ ଘରୁ ବାହାରି ଆସେ । ଘର ଓଲେଇ ସାରି ଅସମ୍ଭବ

ଧକେଇ ହୁଏ । ତା ଆଖି କୋଣ କ୍ରମେ କଳା ପଡ଼ି ଆସେ । ତାର ଓଠର ରଙ୍ଗ ଫିକା ହୋଇ ଯାଏ । କ୍ରମେ ପ୍ରଶାନ୍ତ ପ୍ରକାଶ କରେ ସେ ଅନ୍ତଃସତ୍ତ୍ୱା । ମୁଁ ପୁଣି ଆନନ୍ଦର ହଳଦିଆ ଡକ୍ତତା ଲଫଟର ସୁଗାର କୋଟିଂ ଦେଇ ପ୍ରଶାନ୍ତକୁ ସ୍ନେହ କରେ, ଚୁମା ଖାଏ । ପୁଅ ହେଲେ ତାର ନାମ ସୁନ୍ଦର ଓ ଝିଅ ହେଲେ କଳ୍ପନା ଦିଆଯିବ ବୋଲି ଘୋଷଣା କରେ । ପ୍ରଶାନ୍ତ ସ୍ୱବହ୍ନନ ଆଟିରେ ମୋତେ ଗୃହେଁ । ବ୍ଲାକରେ ବେଶୀ ଦାମ ଦେଇ ଅମୂଲ ଆଣି ଘରର ଥାକ ଭର୍ତ୍ତି କରିଦିଏ । ପ୍ରଶାନ୍ତ ବି କେମିତି ହଠାତ୍ ଜୀବନ୍ତ ହୋଇଉଠେ । ସେ ହୁଏତ ବୁଝିପାରେ ତାର ଏଥର ଝିଅ ହେବ । ସେ ଦ୍ୱିପ୍ରହରରେ ବାଳ ମୁକୁଳା କରି ଗୋଡ଼ ଲମ୍ବାଇ ବସି କୁନି କୁନି ଫ୍ରକ୍ ତିଆରି କରେ । ସେ ଦିନମାନଙ୍କରେ ପ୍ରଶାନ୍ତ ରାତିରେ ଶୋଇ ଶୋଇ ମୋ ସହ ଗପୁଥିଲା, ମୋ ପିଠି ଆଉଁସି ଦେଉଥିଲା ଏବଂ ମୋ ଛୁଟା ବାଳରେ ତାର ସୁନ୍ଦର ନରମ ଆଙ୍ଗୁଳରେ ସିଅଁର କାଟୁଥିଲା । କିନ୍ତୁ ଏବେ ଆଉ ସେଦିନ ନାହିଁ । ପ୍ରଶାନ୍ତ ବହୁତ ବେଳୁ ଶୋଇ ଯାଇଛି ।

ପ୍ରୋଭିଡେଣ୍ଟ ଫଣ୍ଡ କର୍ମଚାରୀମାନଙ୍କ ବିକ୍ଷୋଭ ଭୁବନେଶ୍ୱର: ୭।୫ ପ୍ରୋଭିଡେଣ୍ଟ ଫଣ୍ଡ ଅଫିସ କର୍ମଚାରୀ ୟୁନିୟନର ସାଧାରଣ ସଂପାଦକଙ୍କ ଆହ୍ୱାନକ୍ରମେ ଅଫିସର ସମସ୍ତ କର୍ମଚାରୀ କମିଶନରଙ୍କ ଅଫିସ ସମ୍ମୁଖରେ ବିକ୍ଷୋଭ ପ୍ରଦର୍ଶନ କରିଥିଲେ ବେତନ ବୃଦ୍ଧି ନୂତନ ବେତନ ହାର ସ୍ଥିରୀକରଣ ପ୍ରଭୃତି ଆଠଟି ଦାବୀ ଉପରେ ମହାସଂଘର ନିର୍ଦ୍ଦେଶାନୁଯାୟୀ ବିକ୍ଷୋଭ କରାଯାଇଥିଲା ଚଳିତ ମାସ ମଧ୍ୟରେ ଦାବୀଗୁଡ଼ିକର ନିଷ୍ପତ୍ତି କରାନଗଲେ ସର୍ବଭାରତୀୟ ସ୍ତରରେ ବିକ୍ଷୋଭ ଧର୍ମଘଟ ଓ ଅନଶନ ଆଦି କରାଯିବ ବୋଲି ସଂଘ ତରଫରୁ ଘୋଷଣା କରାଯାଇଛି ।

ମୋର ମନେ ଅଛି ସେଦିନ ଏହିପରି ଦରମା ହାର ଇତ୍ୟାଦି ନେଇ ଅଫିସରେ ବିକ୍ଷୋଭ ପ୍ରଦର୍ଶନ କରାଯିବାର ଥିଲା । ସେଦିନ ଲେବର ରୁମ୍‌ରେ ପ୍ରଶାନ୍ତ । ମୁଁ ବିକ୍ଷୋଭ ଇତ୍ୟାଦି ଛାଡ଼ି ଲେବର ରୁମ୍ ବାହାରେ ଗୁର୍ ମିନାର ଟାଣି ଏପଟ ସେପଟ ହେଉଥିଲି । ପୁଅ ହେଲେ ତା ନାଁ ସୁନ୍ଦର ଓ ଝିଅ ହେଲେ କଳ୍ପନା । ମୋର କଳ୍ପନାର ହାବେଲାଟା ସୁଁ ସୁଁ ଉପରକୁ ଉଠି ଯେତେବେଳେ ତଳକୁ ତଳକୁ ଖସିଲା, ସେତିକିବେଳେ ନର୍ସ ଆସିଲା । ମୁଁ ଭିତରକୁ ଗଲି । ପ୍ରଶାନ୍ତର ମୁଣ୍ଡରେ ସାନ୍ତ୍ୱନାମୂଳକ ହାତଟା ଥାପି ବାହାରକୁ ବାହାରି ଆସିଲି । ତା'ପରେ ବିକ୍ଷୋଭରେ ଗଳାଫଟାଇ ଚିତ୍କାର କଲି । କଳ୍ପନା ଜନ୍ମ ହୋଇଥିଲା ସତ କିନ୍ତୁ ନିଷ୍ପ୍ରାଣ ଦେହ ନେଇ ପୃଥିବୀର ଆଲୁଅକୁ ବାହାରି ଆସିଥିଲା । ପ୍ରଶାନ୍ତ ସେଦିନରୁ କେମିତି ନିଷ୍ପ୍ରାଣ ହୋଇଗଲା । କାହାରି ସହ ଦ୍ରାସ୍ଥ କଥା କହେନାହିଁ । କେବଳ ଗଣ୍ଡେ ଖାଏ, ରଙ୍ଗ ବେରଙ୍ଗର ଔଷଧ ପିଏ ଓ ଶୁଏ । ସେଇ ଔଷଧ ପିଇ ପିଇ ସେ ଆଜିକାଲି ସବୁବେଳେ ଶୋଉଛି ।

ଚୋରି ଅଭିଯୋଗରେ ଜଣେ ଆସାମୀ ଗିରଫ ନିଜ ପ୍ରତିନିଧିଙ୍କ ଠାରୁ ବାଲେଶ୍ୱର ୧୦।୫ ମେ ୨୦ ତାରିଖ ପାହାନ୍ତିଆ ତିନିଟା ବେଳେ ଶ୍ରୀ ଅଶୋକ ମା..ତି ନାମରେ ଜଣେ ଲୋକ ମାଣିଖମ୍ବ ଅଞ୍ଚଳରୁ ଚୋରି କରିବାକୁ ଉଦ୍ୟମ କରୁଥିଲା ବେଳେ ସ୍ଥାନୀୟ ଟାଉନ ଥାନାର ଏ.ଏସ୍.ଆଇ. ଶ୍ରୀ ବି. ଡି. ପରିଡ଼ାର ସହିତ ଆସାମୀକୁ ଧରି ହାଜତକୁ ପଠାଇଛନ୍ତି ଏହି ଆସାମୀର ଘର ଖାନଖୋଲ ହୁମୁଲି ବୋଲି ଜଣା ଯାଇଛି ଏବଂ ସେ ବଡ ବଡ ଚୋରି ଅପରାଧରେ ସଂପୃକ୍ତ ବୋଲି ସନ୍ଦେହ କରାଯାଉଛି ।

ଏହି ଘଟଣା ଦୁର୍ଘଟଣା ଅତିକ୍ରମ କରି ପ୍ରଶାନ୍ତର ସୁଖ ଫେରାଇ ଆଣିବାକୁ ଅନେକ ଚେଷ୍ଟା କରିଥିଲି । ଋଣ କରି ପ୍ରଶାନ୍ତ ପାଇଁ ସୁନ୍ଦର ସୁନ୍ଦର ଶାଢ଼ୀ କିଣିଲି । ନୂଆ ଡିଜାଇନ୍‌ର ଗହଣା ତିଆରି କରିଦେଲି । ମୁଁ ଦେଖିଲି ପ୍ରଶାନ୍ତ ସେ ଗୁଡ଼ା କିଛି ବ୍ୟବହାର କରୁନାହିଁ । କେବଳ ଅଲମିରାରେ ସାଇତି ରଖିଛି । ଦିନେ ସକାଳେ ବିଛଣାରୁ ଉଠି ଦେଖିଲି ପ୍ରଶାନ୍ତ ଅକ୍ଳାନ୍ତିକ ଦେଶବାସରେ ନିଷ୍ପଲକ ଆଖିରେ ବସିଛି । ଆଲମିରା ଖୋଲା । ମୁଁ ହଠାତ୍ କିଛି ବୁଝି ପାରିଲି ନାହିଁ । ପ୍ରଶାନ୍ତ ବାରିପଟ କବାଟ ଆଡେ ଆଙ୍ଗୁଠି ଦେଖାଇଲା । ମୁଁ ଦେଖିଲି ବାରିପଟ ମେଲା । କିଛି ସମୟ ପରେ ବୁଝି ପାରିଲି ଋଣ କରି ପ୍ରଶାନ୍ତ ପାଇଁ ଦୋକାନମାନଙ୍କରୁ ଯେଉଁ ଜିନିଷ ସବୁ ଆଣି ଆଲମିରାରେ ସାଇତିଥିଲି, ସେଗୁଡ଼ା କେଉଁ ଏକ ଅଜଣା ଆସାମୀ ହାତରେ ରାତିର ଅନ୍ଧକାରରେ ଚାଲାଣ ହୋଇ ଯାଇଛି । କାରଣ ପ୍ରଶାନ୍ତ ସବୁବେଳେ ନିଦଘୋଡ଼ ନିଦରେ ଶୁଏ ଯେମିତି ସେ ବର୍ତ୍ତମାନ ଶୋଇ ଯାଇଛି ।

ଉତ୍କଟ ଖାଦ୍ୟ ଓ କିରାସିନି ଅଭାବ ନିଜ ପ୍ରତିନିଧିଙ୍କ ଠାରୁ ଆଜି ୧୦।୫ ବର୍ତ୍ତମାନ ଏ ଅଞ୍ଚଳରେ ଉତ୍କଟ ଖାଦ୍ୟାଭାବ ସାଙ୍ଗକୁ କିରାସିନି ଅଭାବ ମଧ୍ୟ ଦେଖାଦେଇଛି ଏଠାରେ ଚାଉଳ କିଲୋ ପ୍ରତି ଟ୨-୫୦ ଅଟା କିଲୋପ୍ରତି ଟ୨-୫୦ ପଇସାରେ ବିକ୍ରୟ ହେଲାଣି ଏହା ବ୍ୟତୀତ କିଲୋ ପ୍ରତି ସୁଜି ଟ୩-୦୦ ଡାଲଡା ଟ୧୪-୦୦ ଦରରେ ବିକ୍ରି ହେଉଛି ଗତ ୨ମାସ ଧରି କିରାସିନି ଲିଟର ଟ୧-୫୦ ଦରରେ ମଧ୍ୟ ମିଳୁନି ଏଠାକାର ଶତକଡ଼ା ୯୫ଭାଗ ଲୋକ ଖଟିଖିଆ ସେମାନେ କୌଣସି କାମଧନ୍ଦା ନପାଇ ଭୋକ ଉପାସରେ ଦିନ କାଟୁଛନ୍ତି ସରକାର ତୁରନ୍ତ ପ୍ରତି ପଞ୍ଚାୟତରେ ୨।୩ଟି କରି ବିକ୍ରୟ କେନ୍ଦ୍ର ଖୋଲି ଖାଦ୍ୟଦ୍ରବ୍ୟ ଓ କିରାସିନି ଯୋଗାଇ ଦେବାକୁ ଦାବୀ ହେଉଛି ।

ମୁଁ ଏଥର ଖବର କାଗଜ ମୋଡ଼ି ମାଡ଼ି ମୁଣ୍ଡ ଆଡେ ଫିଙ୍ଗିଦେଲି । ଆଉ ଖବର କାଗଜ କିଣିବି ନାହିଁ । ସବୁଦିନେ ସେଇ ଏକ ପ୍ରକାର ଖବର । ବିକ୍ଷୋଭ ଆନ୍ଦୋଳନ ଧର୍ମଘଟ

